# ହାରେମ୍

ଲେଖକ :
**ଶ୍ରୀ ଯୁଗଳ କିଶୋର ଦତ୍ତ**
ଘର ନଂ ୧୫୧/ଏଲ୍. ୩
ଆଚାର୍ଯ୍ୟ ବିହାର
ଭୁବନେଶ୍ୱର-୧୩

ପ୍ରକାଶକ :
**ଅଧୁନା ପ୍ରକାଶନ**
ବାଲୁବଜାର, କଟକ-୨

ପରିବେଷକ :
**କଟକ ଲେଖକ ସହଯୋଗ ସମିତି ଲିଃ**
ପିଠାପୁର, କଟକ-୧

ପ୍ରଥମ ପ୍ରକାଶ
ଡିସେମ୍ବର-୧୯୮୪

ମୁଦ୍ରଣ :
**ଶ୍ରୀ ରାଧାନାଥ କୋ-ଅପରେଟିଭ୍ ପ୍ରେସ୍**
କଟକ-୨

ମୂଲ୍ୟ :
ମୂଦୃଶ୍ୟ ବୋର୍ଡ଼ ବାନ୍ଧେଇ ଟ ୬-୦୦



# HAREM

An unrevealed mysterious story of Moghul Empire

*Written by* :
**Sri Jugal Kishore Dutta**

*Published by*:
**Adhuna Prakasan**
Balubazar, Cuttack-2

First edition
Dec. 1984

*Price* : Delux **Rs. 6-00**

# ପରିଶିଷ୍ଟ

୧୯୮୨ ମସିହା "ପାଞ୍ଚଜନ୍ୟ" ପୂଜା ସଂଖ୍ୟାରେ ହାରେମ୍ ପ୍ରକାଶିତ ହେବା ପରେ, ମୋ ପାଖକୁ ଓ ସମ୍ପାଦକଙ୍କ ପାଖକୁ ବହୁତ ଚିଠି ଆସିଥିଲା । ମୋଗଲ-ମାନଙ୍କର ହାରେମ ବିଷୟ ପଢ଼ିବାପାଇଁ, ପାଠକମାନେ କେତେ ଆଗ୍ରହୀ ତାହାର ପରିଚୟ ମୁଁ ଏହା ପ୍ରଥମେ ପରିପୂର୍ଣ୍ଣଭାବେ ଜାଣିଲି । 'ପାର୍ବତୀ' 'ଶ୍ରୀ ପାନ୍ଥ' ଓ ଆବୁଲଫଜଲ ପ୍ରଭୃତି ଲେଖକମାନଙ୍କର ପୁସ୍ତକ ଓ ବିଭିନ୍ନ ପତ୍ରିକା ମଧ୍ୟରୁ ଉପାଦାନ ସଂଗ୍ରହ କରି କେବଳ ପାଠକମାନଙ୍କୁ ମୋଗଲ ସାମ୍ରାଜ୍ୟ ସମୟରେ ଗଢ଼ି ଉଠିଥିବା 'ହାରେମ୍' ସହିତ ପରିଚୟ କରାଇ ଦେବାଲାଗି ଏହି ପୁସ୍ତକ 'ହାରେମ୍' ଲେଖାଯାଇଛି । ମୂଳ ବିଷୟଗୁଡ଼ିକ ତଥ୍ୟ ସମୃଦ୍ଧ ହୋଇଛି ।

'ହାରେମ୍' ପଢ଼ି ଓଡ଼ିଶାର ବହୁ ଲବ୍ଧପ୍ରତିଷ୍ଠ ଲେଖକ ମୋତେ ଉତ୍ସାହିତ କରି ଯେଉଁ ଚିଠି ଲେଖିଥିଲେ, ସେଗୁଡ଼ିକ ଏହି ପୁସ୍ତକରେ ପ୍ରକାଶ କରିଛି । ସେମାନଙ୍କୁ ମୋର ଆନ୍ତରିକ ଧନ୍ୟବାଦ ଓ କୃତଜ୍ଞତା ଜଣାଉଛି ।

ମୋର ବନ୍ଧୁ ଶ୍ରୀ ରଘୁନାଥ ମହାପାତ୍ର ଏହି ପୁସ୍ତକ ପ୍ରକାଶ କରିବା ଦିଗରେ ମୋତେ ଯେଉଁ ସାହାଯ୍ୟ କରିଛନ୍ତି, ସେଥିଲାଗି ମୁଁ ତାହାଙ୍କୁ ମୋର କୃତଜ୍ଞତା ଜଣାଉଛି ।

ପାଠକମାନେ ପୁସ୍ତକଟିକୁ ପଢ଼ି ପ୍ରୀତ ହେଲେ ମୋର ଶ୍ରମ ସାର୍ଥକ ହେବ ।

**ଯୁଗଳ କିଶୋର ଦତ୍ତ**

‘ହାରେମ୍’ ପଢ଼ିଲି । ହାରେମ ସମ୍ପର୍କରେ ପାଠକମନରେ ଯୁଗଯୁଗ ଧରି ଯେଉଁ କୌତୂହଳ, ଜିଜ୍ଞାସା ଏବଂ ଉତ୍କଣ୍ଠା ଥିଲା ତାହାର ଉତ୍ତର ଏଥିରେ ଅଛି । ନାରୀ କିପରି କାମନା, ଈର୍ଷା, ପ୍ରେମ, ପରାଜୟ ଓ କ୍ରୂରତାର ଶିକାର ହୋଇ ନିଜକୁ ତିଳ ତିଳକରି ଉତ୍ସର୍ଗ କରିଛି । ତାହାରି ଅଜଣା ଏବଂ ରୋମାଞ୍ଚକର କାହାଣୀରେ ‘ହାରେମ୍’ ପୂର୍ଣ୍ଣ । ଯୁଗଳ କିଶୋର ଦତ୍ତଙ୍କର ରଚନା ଶୈଳୀ ଶକ୍ତିଶାଳୀ ଏବଂ ମନୋରମ । ଭାଷା ଏବଂ କାହାଣୀର ବିନ୍ୟାସ ପ୍ରାଣସ୍ପର୍ଶୀ । ଥରେ ପଢ଼ା ଆରମ୍ଭ କଲେ ଶେଷ ନ କରି ରହିହୁଏ ନାହିଁ । ଯେଉଁ ହତଭାଗିନୀମାନେ ହାରେମ୍‌ର ଅନ୍ତଃପୁରବାସିନୀ ହୋଇ ଲୋକ ଲୋଚନର ଅନ୍ତରାଳରେ ରହିଗଲେ ସେମାନେ ଆଜି ଆଉ ନାହାନ୍ତି ସତ, କିନ୍ତୁ ସେମାନଙ୍କର ଦୀର୍ଘଶ୍ୱାସ ଏବେ ବି ଶୁଣାଯାଉଛି ସର୍ବତ୍ର । ସେମାନଙ୍କର କ୍ରନ୍ଦନ ଝାଉଁବଣରେ ଛନ୍ଦି ହୋଇ ରହିଛି । ସେମାନଙ୍କର ଅତୃପ୍ତ ଆତ୍ମାର ବିଳାପ ସ୍ୱରର ପ୍ରଶାନ୍ତିକୁ ବିଘ୍ନିତ କରୁଛି । କାବ୍ୟପରି ମନୋରମ ଯୁଗଳବାବୁଙ୍କର ଏହି ରଚନା ‘ନିଷିଦ୍ଧ ଅଞ୍ଚଳ’ର ଅନେକ ରହସ୍ୟ ଉଦ୍‌ଘାଟନ କରିବାରେ ସହାୟକ ହେବ ଏଥିରେ ସନ୍ଦେହ ନାହିଁ ।

ଯୁଗଳବାବୁ ଏହିପରି ଅନେକ ରହସ୍ୟର ଉଦ୍‌ଘାଟନ କରି ପାଠକର ଚିତ୍ତ ଜୟ କରନ୍ତୁ ଏହା ହିଁ ମୋର ଶୁଭେଚ୍ଛା ।

**ସାତକଡ଼ି ହୋତା**

ଇତିହାସ ଉପେକ୍ଷିତ "ହାରେମ୍" ଊନବିଂଶ ଓ ବିଂଶ ଶତାବ୍ଦୀରେ ସମାଜ ବିଜ୍ଞାନମାନଙ୍କ ଦୃଷ୍ଟିରେ ନବାବ-ବାଦଶାହାମାନଙ୍କ ସମ୍ଭୋଗ ଲାଳସାର ମାୟା-କାନନ ଭଳି ପ୍ରତୀତ ହୋଇଛି । ଏକାଧିକ-ନାରୀ ସମ୍ଭୋଗର ଲାଳସା ଯେପରି କୌଣସି ଗୋଟିଏ ଦେଶର ମାଂସାଶୀ ପୁରୁଷମାନଙ୍କ ମଧ୍ୟରେ ସୀମାବଦ୍ଧ ନୁହେଁ, ହାରେମ୍ ମଧ୍ୟ ସେହିଭଳି କୌଣସି ଗୋଟିଏ ଦେଶର ଭୌଗୋଳିକ ସୀମାରେଖା ମଧ୍ୟରେ ଆବଦ୍ଧ ନୁହେଁ । ମଧ୍ୟଯୁଗୀୟ ମାୟା-କାନନର ସେଇ ଭାଗ୍ୟହୀନା ସୁକୁମାରୀ ଫୁଲ-ମାନଙ୍କର ଅତୃପ୍ତ ଦୀର୍ଘଶ୍ୱାସ ସମସ୍ତର ପଥର ବୃପାତଳେ ଫସିଲ୍ ହୋଇଯିବା ଆଗରୁ ବହୁ କୌତୂହଳୀ ଲେଖକ ଐତିହାସିକତାକୁ ସଂଗ୍ରହ କରି ପାଠକମାନଙ୍କ ସମ୍ମୁଖରେ ଉପସ୍ଥାପିତ କରିଛନ୍ତି । ବାଦଶାହୀ ଶିହରଣ ଆଉ ବିକୃତ-ରୁଚିର ଯାଦୁଘର ଏଇ 'ହାରେମ' କାହାଣୀକୁ ଓଡ଼ିଶାର ସୁପରିଚିତ ଲେଖକ ଓ ଅନୁବାଦକ ଯୁଗଳ କିଶୋର ଦତ୍ତ ଓଡ଼ିଆ ଭାଷାରେ ପ୍ରଥମଥରପାଇଁ ରଚନା କରି ପ୍ରଶଂସନୀୟ କାର୍ଯ୍ୟ କରିଛନ୍ତି ।

"ହାରେମ୍" ଉପନ୍ୟାସ ନୁହେଁ । ଏହା ତଥ୍ୟମୂଳକ ଐତିହାସିକ ରଚନା । କିନ୍ତୁ ଯୁଗଳ କିଶୋର ଦତ୍ତଙ୍କ ଭାଷାରେ ସାବଲୀଳତା ଓ ବର୍ଣ୍ଣନାର ଚମତ୍କାରିତା ଏହାକୁ ଉପନ୍ୟାସ ଭଳି ସୁଖପାଠ୍ୟ କରାଇଛି । ଆକାରରେ କ୍ଷୁଦ୍ର ହେଲେ ମଧ୍ୟ ଗୁଣାତ୍ମକ ଦୃଷ୍ଟିରୁ ପରିଣତ-ମସ୍ତିଷ୍କ ପାଠକମାନଙ୍କ ପାଇଁ ଏହା ସୁସ୍ୱାଦୁ ଏବଂ ଉପଭୋଗ୍ୟ ହେବ ବୋଲି ମୁଁ ଆଶା କରୁଛି ।

**ବିଭୂତି ପଟ୍ଟନାୟକ**

ଐତିହାସିକ ତଥ୍ୟାଶ୍ରୟୀ ଉପନ୍ୟାସ, ଗଳ୍ପ ବା ରମ୍ୟରଚନା ଓଡ଼ିଆ ସାହିତ୍ୟରେ ବିରଳ । ତତୋଽଧିକ ବିରଳ ଐତିହାସିକ ପୃଷ୍ଠଭୂମି ଉପରେ ତତ୍କାଳୀନ ପରିସ୍ଥିତିରେ ଜୀବନ ବିତାଉଥିବା ସାଧାରଣ ବ୍ୟକ୍ତିବିଶେଷଙ୍କ ବିରହମିଳନ, ହସକାନ୍ଦ, ଦୁଃଖ-କଷ୍ଟର ମାର୍ମିକ କାହାଣୀ । ଏହି ପରିପ୍ରେକ୍ଷୀରେ ଶ୍ରୀଯୁକ୍ତ ଯୁଗଳ କିଶୋର ଦତ୍ତଙ୍କ 'ହାରେମ୍' ଓଡ଼ିଆ ସାହିତ୍ୟରେ ଏକ ପ୍ରଶଂସନୀୟ ସଂଯୋଜନ । ସମ୍ରାଟ ପୁରୀର ଅଭ୍ୟନ୍ତରରେ ଲୋକଲୋଚନ ଅଗୋଚରରେ ଘଟିଥିବା ହାରେମ୍ ବାସୀ ମହିଳା ଓ ଖୋଜାମାନଙ୍କର ଅତୁଳ କାହାଣୀକୁ ଚମତ୍କାର ଭାବରେ ସେ ରୂପ ଦେଇପାରିଛନ୍ତି । ଏକନିଃଶ୍ୱାସରେ ପଢ଼ି ଶେଷ କଲାପରି ବହିଟିଏ ।

**ରବି ପଟ୍ଟନାୟକ**

'ପାଞ୍ଚଜନ୍ୟ' ପତ୍ରିକା ପୃଷ୍ଠାରେ 'ହାରେମ୍' ପ୍ରବନ୍ଧ ପଢ଼ିଲି । ମୂଳରୁ ଶେଷ ପର୍ଯ୍ୟନ୍ତ ରୋମାଞ୍ଚକର ଉପନ୍ୟାସ ପଢ଼ିଲି ଭଳି ଅନୁଭବ କଲି । ବସ୍ତୁ ସତ୍ୟ ଓ ତଥ୍ୟ ସମ୍ବଳିତ ଏହି ପ୍ରବନ୍ଧଟିର ଭାଷା, ଶୈଳୀ ଉପସ୍ଥାପନା ପାଠକର ହୃଦୟକୁ ଶେଷ ପର୍ଯ୍ୟନ୍ତ ନାଟକୀୟ ଉତ୍କଣ୍ଠା ଓ ଆବେଗର ଆଚ୍ଛନ୍ନ କରି ରଖିବାରେ ସମର୍ଥ ହୋଇ ପାରିଛି । ଶ୍ରୀ ଯୁଗଳ କିଶୋର ଦତ୍ତଙ୍କର 'ହାରେମ୍' ପଢ଼ିବାବେଳେ ପାଠକ ନିଜେ ଯେପରି 'ହାରେମ୍'ର ବିଳାସପୂର୍ଣ୍ଣ ଆଡମ୍ବରମୟ ପ୍ରେମ, ପ୍ରଣୟ, ବ୍ୟଭିଚାର ଏବଂ ଯନ୍ତ୍ରଣାଭରା ଜୀବନର ପ୍ରତ୍ୟକ୍ଷ ଦ୍ରଷ୍ଟା ଭାବରେ ମଗ୍ନ ହୋଇଯାଏ । 'ହାରେମ୍' ସମ୍ପର୍କରେ ପ୍ରତ୍ୟେକଙ୍କ ମନରେ ଯେଉଁ ଉତ୍କଣ୍ଠା ଓ କୌତୁହଳ ଥାଏ ତାହା ଶ୍ରୀଯୁକ୍ତ ଦତ୍ତଙ୍କର ଗବେଷଣା ମୂଳକ ପୁସ୍ତକ 'ହାରେମ୍' ପଢ଼ିଲେ ନିଶ୍ଚୟ ଦୂରୀଭୂତ ହେବ ଏଥିରେ ସନ୍ଦେହ ନାହିଁ । ଏହି ପୁସ୍ତକ ପ୍ରକାଶ ଅବକାଶରେ ଶ୍ରୀଯୁକ୍ତ ଦତ୍ତଙ୍କୁ ଅଭିନନ୍ଦନ ଏବଂ ଶୁଭେଚ୍ଛା ଜଣାଉଛି ।

**ପ୍ରତିଭା ରାୟ**

ଗଣତନ୍ତ୍ର ଶାସନରେ ରହି ପାଠକମାନେ ରାଜରାଜୁଡ଼ାଙ୍କ ସମୟର ଘଟଣାବଳୀ ଜାଣିପାରୁ ନାହାନ୍ତି । ରାଜାମହାରାଜାମାନଙ୍କ ଚରିତ୍ରଗତ ଦୋଷରୁ ଆଳସ୍ୟ ଓ ଅସୂୟ ଯୋଗୁ କିପରି ଦେଶ ପରାଧୀନ ହେଲା ସେ ଦଗରେ 'ହାରେମ୍' ବେଶ୍ ଆଲୋକ ଯୋଗାଇବ । ଲକ୍ଷ୍ନୌ ବା ଅଉଧ (ଅଯୋଧ୍ୟା)ର ନବାବମାନେ କେବଳ ସେମାନଙ୍କ ହାରେମ୍‌ରେ ମାତ୍ର ଶାସନ ଭୁଲିଗଲେ । ଇଂରେଜମାନେ ସହଜରେ ଶାସନଭାର ନେଇଗଲେ । ଶେଷ ମୋଗଲ ସମ୍ରାଟ ବାହାଦୂରଶାହ ସେହି କାରଣରୁ ପରିଷଦବର୍ଗଙ୍କ ଖେଳନା ହୋଇ ରହିଗଲେ ।

'ହାରେମ୍' ଲେଖାଟି ବେଶ୍ ଭଲ ହୋଇଛି । ହାରେମ୍ ସମ୍ପର୍କରେ ଆପଣଙ୍କ ଗବେଷଣାମୂଳକ ଲେଖା ଲୋକଙ୍କୁ ନୂଆ ଜ୍ଞାନ ଯୋଗାଇବ ।

**ସହଦେବ ସାହୁ**

ଶ୍ରୀଯୁକ୍ତ ଯୁଗଳ କିଶୋର ଦତ୍ତଙ୍କୁ ମୁଁ ତାଙ୍କର 'ହାରେମ୍' ପାଇଁ ପୂର୍ବରୁ ଅଭିନନ୍ଦନ ଜଣାଇଥିଲି । 'ପାଞ୍ଚଜନ୍ୟ'ରେ ପ୍ରକାଶ ପାଇବା ପରେ ଅନେକ ବ୍ୟକ୍ତି ତାଙ୍କୁ ଅଭିନନ୍ଦନ ଜଣାଇଥିବେ, ଏଥିରେ ସନ୍ଦେହ ନାହିଁ । କାରଣ ଭାରତୀୟ ସଭ୍ୟତାରେ 'ହାରେମ୍' ଏକ ରୋମାଞ୍ଚକର ଅଧ୍ୟାୟ । ମୋଗଲ ସାମ୍ରାଜ୍ୟ, ବିଶେଷକରି ଭାରତ ଇତିହାସର ଏକ ବିଶିଷ୍ଟ ସମୟରେ 'ହାରେମ୍' ଆଧିପତ୍ୟ କିଛି କମ୍ ନୁହେଁ । ଯୁଗଳବାବୁଙ୍କର 'ହାରେମ୍'ରେ ବିଭିନ୍ନ ଘଟଣା ଦୁର୍ଘଟଣା ଆଉ ପ୍ରୀତିମଧୁର ତଥା ଦୈହିକ ସମ୍ପର୍କର ବର୍ଣ୍ଣନାରେ ଚମତ୍କାରିତା ମୋତେ ମୁଗ୍ଧ କରିଥିଲା । ଏକନିଶ୍ୱାସରେ ଶେଷ କରିବା ଭଳି ବିଷୟ ।

'ହାରେମ୍' ଓଡ଼ିଆ ସାହିତ୍ୟର ଏକ ନୂତନ ଅଧ୍ୟାୟର ସୂତ୍ରପାତ କରିବ ଏଥିରେ ଦ୍ୱିମତ ନାହିଁ ।

**ବିରେନ୍ଦ୍ର କୃଷ୍ଣ ଧଳ**

ବହୁଦିନ ଆଗରୁ ମୋଗଲ ବାଦଶାହାମାନଙ୍କର 'ହାରେମ୍' ସମ୍ପର୍କରେ କିଛି ରୋମାଞ୍ଚକର କାହାଣୀ କେତେକ ପତ୍ରପତ୍ରିକାରେ ପଢ଼ିଥିଲି । 'ପାଞ୍ଚଜନ୍ୟ'ର ପୂଜାସଂଖ୍ୟାରୁ 'ହାରେମ୍' ପଢ଼ିବା ପରେ ଜଣେ ଡାକ୍ତର ଭଳି ହାରେମ୍‌ର ଶବ ବ୍ୟବଚ୍ଛେଦ (ପୋଷ୍ଟମର୍ଟମ୍) ଦେଖିଲି । ହାରେମ୍ କେବଳ ରୂପରାଜିର ସ୍ୱର୍ଗ—ସାଜାର ମହଲ ନୁହେଁ କି ପ୍ରେମ-ଶରହର ମଧୁର ମିଳନ ପୀଠ ନୁହେଁ । ତାହା ଏକ ପ୍ରେମ ପ୍ରତିହିଂସାର କଳଙ୍କିତ ମହଲ । ହାରେମ୍‌ର ପ୍ରତି ଇଟା ଖଣ୍ଡରେ ଭରି ରହିଛି ଅସଂଖ୍ୟ ତରୁଣୀଙ୍କ କରୁଣ ଜୀବନର ରକ୍ତାକ୍ତ ଇତିହାସ । ନପୁଂସକ ଖୋଜାମାନଙ୍କର ନାରକୀୟ ବ୍ୟଭିଚାର, ବାଦଶାହମାନଙ୍କର ନାରୀ ସମ୍ଭୋଗର ଉତ୍କଟ ଲାଳସା । ନାରୀ ପ୍ରତି ନାରୀ କିପରି ପ୍ରତିହିଂସାପରାୟଣା ହୋଇପାରେ, ବିଷଦେଇ ସେ କିପରି ତା'ର ପ୍ରାଣପ୍ରିୟକୁ ହତ୍ୟା କରିପାରେ, ମାନବୀୟ ଚରିତ୍ର କିପରି ଆସୁରିକ ଚରିତ୍ରରେ ପରିଣତ ହୋଇପାରେ ତାହାର ବହୁ ଉପାଖ୍ୟାନ ରହିଛି ଏହି 'ହାରେମ୍'ରେ । ଭୌଗୋଳିକ, ଐତିହାସିକ ବହୁ ତଥ୍ୟରେ ପରିପୂର୍ଣ୍ଣ ଏହି 'ହାରେମ୍ ।' ଓଡ଼ିଶାର ପାଠକମାନଙ୍କ ପାଇଁ ଯୁଗଳବାବୁଙ୍କ ଏହି ଲେଖା ଯେ ତଥ୍ୟପୂର୍ଣ୍ଣ ଏବଂ ଉପାଦେୟ ଏଥିରେ କାହାର ଦ୍ୱିମତ ନାହିଁ । ତାଙ୍କ ଲେଖନୀରୁ ଏହିପରି ଅନୁଦ୍‌ଘାଟିତ ସାହିତ୍ୟ ସମ୍ଭାର ପ୍ରକାଶ ପାଉ ।

**ରଘୁନାଥ ମହାପାତ୍ର**

'ପାଞ୍ଚଜନ୍ୟ'ର ପୂଜାସଂଖ୍ୟାରେ ଆପଣଙ୍କର ଲେଖା 'ହାରେମ୍' ପଢ଼ିଲି । ଇତିହାସରେ ଏପରି କେତେକ ବିଷୟ ଅଛି, ଯାହା କେବଳ ହାତର ରେଖା ଗଣିଲା ଭଳି କେଇଜଣଙ୍କର ବ୍ୟକ୍ତିଗତ ସାମଗ୍ରୀ ହୋଇଛି । ଇତିହାସର ବାସ୍ତବ ସତ୍ୟ ଶତକଡ଼ା ୯୫ ଭାଗ ଲୋକଙ୍କ ନିକଟରେ ପହଞ୍ଚିପାରୁ ନାହିଁ । ଆପଣଙ୍କର ଲେଖା 'ହାରେମ୍' ସେହି ସତ୍ୟକୁ ବହୁଲୋକଙ୍କ ଆଗରେ ଉପସ୍ଥାପିତ କରିପାରିଛି ।

ଥରେ ଆରମ୍ଭ କଲେ ତୃପ୍ତିହେବନି । ପ୍ରକୃତରେ ଇତିହାସରେ ଏତେ ସତ୍ୟ ଲୁଚି ରହିଛି, ମୁଁ କିମ୍ବା ମୋର ବହୁତ ବନ୍ଧୁ ଜାଣି ନ ଥିଲେ । ସମ୍ପାଦକ ମହାଶୟ ଆପଣଙ୍କର 'ହାରେମ୍'କୁ ଛପାଇ ଇତିହାସର ଅନ୍ୟ ଏକ ବିସ୍ମୃତ ଅଧ୍ୟାୟ ବହୁଲୋକଙ୍କ ଆଗରେ ଉପସ୍ଥାପିତ କରିଛନ୍ତି ।

ଆପଣଙ୍କୁ ଧନ୍ୟବାଦ ।

**ଚୌଧୁରୀ ପ୍ରିତୀସ୍ ସାମଲ** ,

ଯାଜପୁର ରୋଡ୍

ଓଡ଼ିଆ ସାହିତ୍ୟରେ ଜଣେ ସଫଳ ଅନୁବାଦକଭାବେ ଖ୍ୟାତି ଲାଭ କରିଥିବା ଶ୍ରୀ ଯୁଗଳକିଶୋର ଦତ୍ତଙ୍କର 'ହାରେମ୍'-ଶୀର୍ଷକ ନିବନ୍ଧଟି ବେଶ୍ ସୁଖପାଠ୍ୟ ଓ ଉପଭୋଗ୍ୟ । ପୃଥିବୀର ବହୁ ବିଳାସୀ ରାଜନ୍ୟବର୍ଗ ବହୁବଲ୍ଲଭ ଥିବାର ନଜିର ରହିଛି । କିନ୍ତୁ ମଧ୍ୟପ୍ରାଚ୍ୟ ତଥା ଭାରତରେ ମୋଗଲ, ପଠାଣ, ବାଦଶାହମାନଙ୍କର 'ହାରେମ୍'-ପ୍ରଥାର ତୁଳନା କିଛି ଥିବାଭଳି ମନେ ହୁଏ ନାହିଁ । ନବାବ୍, ବାଦଶାହମାନଙ୍କ ମନୋରଞ୍ଜନ ପାଇଁ ଶତଶତ ରୂପସୀ ତରୁଣୀଙ୍କୁ ଅଣାଯାଇ ହାରେମ୍‌ରେ ରଖାଯାଇଥିଲା ଓ ସେମାନଙ୍କ ତତ୍ତ୍ୱାବଧାନପାଇଁ ଖୋଜାମାନଙ୍କୁ ନିଯୁକ୍ତ କରିଦେଇଥିଲେ । ଏହି ଖୋଜାମାନେ ହେଲେ ନପୁଂସକ । ଅନେକଙ୍କୁ ଏଥିପାଇଁ ନପୁଂସକ କରାଯାଇଥିଲା । କ୍ରୀତଦାସ ପ୍ରଥାଭଳି ଏହା ଥିଲା ଏକ ନିଷ୍ଠୁର ପ୍ରଥା । ହାରେମ୍ ଥିଲା ଏକ ସ୍ୱତନ୍ତ୍ର ରାଜ୍ୟଭଳି । ତାର ନୀତି-ନିୟମ ଥିଲା ସ୍ୱତନ୍ତ୍ର । ଯୁଗଳବାବୁ ବହୁ ପରିଶ୍ରମ କରି ହାରେମ୍‌ର ବିଷୟବସ୍ତୁ ନାନାଆଡ଼ୁ ସଂଗ୍ରହ କରି ସୁନ୍ଦରଭାବେ ଏଥିରେ ଉପସ୍ଥାପିତ କରିଛନ୍ତି; ଯାହା କି ଏକ ରୋମାଞ୍ଚକର ଉପନ୍ୟାସ ପଢ଼ିବାଭଳି ଲାଗେ । ହାରେମ୍‌ର ପ୍ରାଚୁର୍ଯ୍ୟ, ଭୋଗବିଳାସ ସାଙ୍ଗକୁ ପିଞ୍ଜରାବଦ୍ଧ କାମନାଦଗ୍ଧ ରୂପସୀ ତରୁଣୀମାନଙ୍କର ଅଶ୍ରୁ, ବ୍ୟଭିଚାର, ଚକ୍ରାନ୍ତ, ରକ୍ତପାତ ସବୁକିଛିକୁ ଅତି ପ୍ରାଣସ୍ପର୍ଶୀ ଭାଷାରେ ଏଥିରେ ବର୍ଣ୍ଣିତ । ନାରୀ-ଜୀବନର ସକଳ ବ୍ୟର୍ଥତା ଓ ଦୁଃଖ ସତ୍ତ୍ୱେ ବହୁ ସ୍ୱାଧୀନତାପ୍ରିୟ ଶ୍ୱେତାଙ୍ଗ ତରୁଣୀ ଯେ ହାରେମ୍‌ର 'ଭୋଗବିଳାସପାଇଁ ହେଉ କିମ୍ବା କୌତୂହଳବଶତଃ ସ୍ୱତଃପ୍ରବୃତ୍ତ ହୋଇ ହାରେମବାସିନୀ ହୋଇଥିଲେ ଏହା ଅତୀବ କୌତୂହଳଜନକ ।

'ପାଞ୍ଚଜନ୍ୟ'ରେ ପ୍ରକାଶିତ ଯୁଗଳବାବୁଙ୍କର 'ଏକ ମସିର ଇତିକଥା' ଅନ୍ୟ ଏକ ମନୋଜ୍ଞ ରଚନା—ଯାହା କି ତାଙ୍କର ବହୁପଠନ ଏବଂ ଅନୁସନ୍ଧିତ୍ସୁ-ମନର ସୂଚନା ଦିଏ ।

ଯୁଗଳବାବୁ ତାଙ୍କର ଅନୁବାଦ ତଥା ଅନ୍ୟାନ୍ୟ ରଚନାଦ୍ୱାରା ଓଡ଼ିଆ-ସାହିତ୍ୟକୁ ସମୃଦ୍ଧ କରନ୍ତୁ —ଏହା ହିଁ କାମନା ।

**ଶ୍ରୀ ଦୁର୍ଗାଚରଣ କୁଅଁର**

୧୯୮୬ ପୂଜାସଂଖ୍ୟା 'ପାଞ୍ଚଜନ୍ୟ'ରୁ ଆପଣଙ୍କର 'ହାରେମ୍'-ଶୀର୍ଷକ ଦୀର୍ଘ ରଚନାଟି ପାଠ କରିବାପରେ ମନର ଆବେଗ ବ୍ୟକ୍ତ କରିବାନିମିତ୍ତ ଏ ପତ୍ରଟି ଲେଖୁଛୁ । ଆପଣ ନିଜର ଲେଖାମାଧ୍ୟମରେ ହାରେମ୍‌ସ୍ଥିତ ନାରୀମାନଙ୍କର ଯେଉଁ ଚିତ୍ର ଦେଇଛନ୍ତି, ମୁଁ ସେମାନଙ୍କୁ ଅଗ୍ନିଗିରି ହିଁ କହିବି । ହାରେମ୍ ମୋ ମତରେ ଏକ ନର୍କ । ଯେଉଁଠାରେ ସୁନ୍ଦରୀମାନଙ୍କର ସବୁକିଛୁ ଅପହରଣ କରିନିଆଯାଇ ନିଃଶେଷ କରି ସେମାନଙ୍କୁ ମହାର୍ଘ ଆବରଣ ଓ ଆଭରଣର ପେଟିକାରେ ପଟ୍ଟ ପରି ସଜାଇ ଦିଆଯାଏ ।

ଆପଣଙ୍କର 'ହାରେମ୍' ପଢ଼ି ପଢ଼ି ମୋ ଆଖିରେ ଲୁହ ଆସିଛି । ହାରେମ୍ ସମ୍ପର୍କରେ ଏତେ ଚମତ୍କାର ସଂଗ୍ରହ କଲେ କିପରି ଆପଣ ? ସତ କହୁଛୁ, ଆପଣଙ୍କର ଏ ରଚନାଟି ପାଠ କରି ନ ଥିଲେ ହାରେମ୍ ସମ୍ପର୍କରେ ଏତେ ରହସ୍ୟମୟ, ଚମକପ୍ରଦ ଏବଂ ରୋମହର୍ଷଣକାରୀ ଘଟଣାବଳୀ କ'ଣ କେବେ ଜାଣିପାରିଥାନ୍ତୁ ? ସେଥିଲାଗି ମୁଁ ଆପଣଙ୍କ ନିକଟରେ ଅନେକ ଅନେକ କୃତଜ୍ଞ । ଆମେସବୁ ଏତେ ବ୍ୟସ୍ତ ଲୋକ ନିଜ ସମ୍ପର୍କରେ ଯେ, ଅନ୍ୟର ଦୁଃଖ-ସୁଖ ଜାଣିବାକୁ ଆମ୍ଭମାନଙ୍କର ସମୟ ମିଳେ ନାହିଁ । ଅଥଚ ଆପଣ ଜୀବନର ଜଞ୍ଜାଳ ମଧ୍ୟରେ ସମୟ କରି ଏତେ ମହାର୍ଘ ରତ୍ନରାଜିକୁ ଏକତ୍ର କରିପାରି ଏକ ଚମତ୍କାର ହାର ଯେ ଗୁନ୍ଥି ଦେଇ ପାରିଛନ୍ତି, ଏହା କ'ଣ କମ୍ ଗୌରବର କଥା ।

ହାରେମ୍ କାରାଗାରର (ହାରେମ୍‌କୁ ମୁଁ ଏକ କାରାଗାର କହିବି, କାରଣ ସେଠାରେ ଦେହ, ମନ, ଇଚ୍ଛା, ହସ, କାନ୍ଦ ସବୁ ବନ୍ଦୀ) ନାରୀମାନଙ୍କର ଅଶ୍ରୁଳ ଦୀର୍ଘଶ୍ୱାସ ଏବେ ବି ଏ ପୃଥିବୀର ବାୟୁମଣ୍ଡଳରେ ପରିବ୍ୟାପ୍ତ ହୋଇ ରହିଛି । ସେହି ଦୀର୍ଘଶ୍ୱାସର କେତେକ ଆହରଣ ଏଇ ହାରେମ୍ ।

ଆପଣ, ଆପଣଙ୍କର ଏଇ ମହାର୍ଘ ସୃଷ୍ଟିଲାଗି ମୋର ଆନ୍ତରିକ ଅଭିନନ୍ଦନ ଗ୍ରହଣ କରନ୍ତୁ ।

ବିଜୟକୃଷ୍ଣ ମହାନ୍ତି

କନ୍ଷ୍ଟାନ୍‌ଟିନୋପଲ୍‌ର ବ୍ରିଟିଶ୍ ରାଜଦୂତ ଚମକିଉଠିଲେ । ଆପଣ ମକ୍‌କାର ଅମୀର ଶେରିଫ୍ ଅଲ୍ଲୀ ହାଇଦରଙ୍କୁ ବିବାହ କରିବାପାଇଁ ଇଚ୍ଛା କରନ୍ତି ? ଆପଣ କ'ଣ ପାଗଳ ହୋଇଗଲେ ମିସ୍ ଡନ୍ ?

ଜଣେ ବିଶିଷ୍ଟ ଇଂରେଜ କର୍ଣ୍ଣେଲଙ୍କର ଏକମାତ୍ର କନ୍ୟା ଏହି ଇଶାବେଲ ଡନ୍ । ଗୋଲାପ ପରି ଦେହର ରଙ୍ଗ । ଆଖିରେ ବୁଦ୍ଧିର ଦୀପ୍ତି ।

ପ୍ରବୀଣ ରାଷ୍ଟ୍ରଦୂତଙ୍କ ଆଡ଼େ ସେ ଧୀରେ ମୁଣ୍ଡ ନୁଆଁଇଥିଲା ଟିକିଏ ।

—ଆପଣ କ'ଣ ଜାଣନ୍ତି, ଏହି ଲୋକଙ୍କୁ ବିବାହ କରିବା ଅର୍ଥ ହେଲା ସବୁ ଧନପାଇଁ ବ୍ରିଟିଶ୍ ସ୍ୱାଧୀନତାକୁ ବିସର୍ଜନ ଦେବା ? ଆପଣ କ'ଣ ଜାଣନ୍ତି, ଏହାପରେ ଆପଣଙ୍କୁ ସାରା ଜୀବନ ଅନ୍ତଃପୁରରେ କଟାଇବାକୁ ହେବ ? ଜାଣନ୍ତି, ସେହି ଅନ୍ତଃପୁରର ନାମ ହାରେମ୍ ?

ଏହି ତରୁଣୀକୁ ରକ୍ଷା କରିବାପାଇଁ କର୍ତ୍ତବ୍ୟପରାୟଣ କୂଟନୀତିବିଦ୍ ଶେଷ ଥର ପାଇଁ ଚେଷ୍ଟା କଲେ; କିନ୍ତୁ ଇଶାବେଲ ଡନ୍ ହସିଦେଇ ମୁଣ୍ଡ ତଳକୁ କଲା ।

ଦେନ୍ ଆଇ ମଷ୍ଟ ଉଇଶ୍ ୟୁ ଦ ବେଷ୍ଟ୍ ଅଫ୍ ଲକ୍, ଏଣ୍ଡ୍ ଏଭ୍ରି ହ୍ୟାପିନେସ୍ ମିସ୍ ଡନ୍ ପରାଜିତ ରାଷ୍ଟ୍ରଦୂତ ହାତ ବଢ଼ାଇ କରମର୍ଦ୍ଦନ କରି ଚାଲିଗଲେ ।

ଘଣ୍ଟାକ ମଧ୍ୟରେ ଜଣେ ବ୍ରିଟିଶ୍ କର୍ଣ୍ଣେଲଙ୍କର ଏକମାତ୍ର କନ୍ୟା ଇଶାବେଲ ଡନ୍ ସହିତ ମକ୍‌କାର ତରୁଣ ଅମୀର ଶେରିଫ୍ ଅଲ୍ଲୀ ହାଇଦରଙ୍କର ବିବାହ ହୋଇଗଲା ।

ସପ୍ତଦଶୀ ଇଂରେଜ-କନ୍ୟା ଇସାବେଲ ଡନ୍‌ର ନୂଆ ନାମ ହେଲା ବିବି ଫତିମା । ସେ ହାରେମବାସିନୀ ; ଚାରିଆଡ଼େ ପାଚେରି ଘେରିଥିବା ଗମ୍ବୁଜ ଓ ମିନାରଶୋଭିତ ଗୋଟିଏ ପ୍ରାସାଦ ତାଙ୍କର ବାସସ୍ଥାନ ।

ଏହି ଖବର ଶୁଣି ସାରା ୟୁରୋପ ବିସ୍ମିତ ହୋଇଯାଇଥିଲା । ପଶ୍ଚିମ ଜଗତର ସ୍ୱାଧୀନ ସ୍ତ୍ରୀ, ପୂର୍ବ ଦେଶର ହାରେମ୍‌କୁ ବାଛିନେବ, ଏହା ଯେପରି କେହି ବିଶ୍ୱାସ କରିପାରି ନ ଥିଲେ । ଇସାବେଲାର କାହାଣୀ ଏହି ଶତକର ପ୍ରଥମ ଘଟଣା ।

୧୯୫୯ ମସିହାରେ ଇସାବେଲାର ନିଜ କନ୍ୟା ଶାହଜାଦୀ ମୁସବା ହାଇଦର ମାଆଙ୍କର ଦେଶକୁ ବୁଲିବାକୁ ଆସି ଜଣାଇଯାଇଥିଲେ ଯେ, ମାଆ ମୋର ଖୁବ୍ ଖୁସି । ହାରେମ୍ ସମ୍ପର୍କରେ ତୁମେମାନେ ଯାହା ଶୁଣିଛ ତାହା ସବୁ ଭୁଲ ।

ସୌଦିଆରବର ବାଦଶାହଙ୍କର ନୁହେଁ, ମକ୍‌କାର ଅମୀରଙ୍କର ପ୍ରାସାଦ । ସେଠାରେ ମାତ୍ର ଷାଠିଏ ଜଣ ପୁରୁଷ ଓ ସ୍ତ୍ରୀ ବାସ କରୁଥିଲେ । ତେଣୁ ମୁସବା ହାଇଦର ମିଛ କହି ନ ଥିଲେ । କିନ୍ତୁ ଇତିହାସ କହିବ, ଇସାବେଲା ଡନ୍‌ର ବିବରଣୀ ସତ୍ୟ ନୁହେଁ । ଖଲିଫା ଆଲମୁତା ଓୟାକିଲଙ୍କର ପ୍ରାସାଦରେ ଚାରି ହଜାର ରୂପସୀ ଥିଲେ । ମହମ୍ମଦ ତୁଗଲକଙ୍କ ସୌଖୀନ ସୈନ୍ୟ ମକବୁଲଙ୍କର ଥିଲା ଦୁଇ ହଜାର । ଆବୁଲଫଜଲ କହିଛନ୍ତି : ବାଦଶାହ ଆକବରଙ୍କର ହାରେମ୍‌ରେ ଥିଲେ ପାଞ୍ଚ ହଜାର ସୁନ୍ଦରୀ । ଜାହାଙ୍ଗୀର ଥିଲେ ଆହୁରି ବିଳାସୀ ସମ୍ରାଟ୍ । ହାରେମ୍ ପାଇଁ ତାଙ୍କର ଦୈନିକ ତିରିଶ ହଜାର ଟଙ୍କା ଖର୍ଚ୍ଚ ହେଉଥିଲା ।

ଶାହଜାହାନ ଥିଲେ ବିଖ୍ୟାତ ବିଳାସୀ । ନିକୋଲାଇ ମାନୁସି କୁହନ୍ତି, ଆଉରଙ୍ଗଜେବଙ୍କ ହାରେମ୍‌ରେ ରୂପସୀ ଥିଲେ ଦୁଇ ହଜାର ।

ତୁର୍କୀର ବାଦଶାହମାନେ ତାଙ୍କର ଅନ୍ତଃପୁରର ନାମ ଦେଇଥିଲେ ହାରେମ୍ । ହାରେମ୍ ହେଉଛି ଆରବୀ ଶବ୍ଦ । ଏହାର ଅର୍ଥ ହେଲା—ନିଷିଦ୍ଧ । ପାରସ୍ୟରେ ସେମାନେ କହୁଥିଲେ—ଅନ୍ଦରମ୍ । ଭାରତବର୍ଷରେ କେହି କେହି କହୁଥିଲେ—ଜେନାନା । ପାରସିକ "ଜାନ୍" ଶବ୍ଦର ଅର୍ଥ ହେଲା ମହିଳା । ତହିଁରୁ ଜନାନାଖାନା କିମ୍ବା ଜେନାନା । ତୁର୍କୀମାନେ ଆରବ୍ୟ ଶବ୍ଦକୁ ମାନିନେଲେ । ନିଷିଦ୍ଧ ଜନାନାଖାନା ସେମାନଙ୍କ ମୁହଁରେ ନାଁ ନେଲା—ହାରେମ୍ । ହାରେମ୍‌ଲିକ୍ । ଯାହାର ଅର୍ଥ ହେଲା ପ୍ରାସାଦର ଅନ୍ଦର । ଏହି ହାରେମ୍‌ଲିକ୍ ଥିଲା ସୁର୍ଖୀମହଲ । ସେଠାକୁ ବାହାରର ଲୋକମାନଙ୍କ ଯିବାପାଇଁ ବାରଣ ଥିଲା । ଶ୍ରମିକମାନେ ଯେତେବେଳେ କାମ କରିବାକୁ ଯାଆନ୍ତି, ସେତେବେଳେ ସେମାନଙ୍କୁ ପରୀକ୍ଷା କରାଯାଇ, ସେମାନଙ୍କର ଚେହେରା ଓ ଚରିତ୍ରର ପୁଙ୍ଖାନୁପୁଙ୍ଖ ବିବରଣୀ ଲେଖିରଖି ଛାଡ଼ପତ୍ର ଦିଆହେଉଥିଲା ।

ସାଥିରେ ପ୍ରହରୀଦଳ ମଧ୍ୟ ରହୁଥିଲେ । ଯଦି କେତେବେଳେ ଚିକିତ୍ସକମାନଙ୍କୁ ବାହାରୁ ଆସିବାକୁ ପଡ଼ୁଥିଲା, ସେତେବେଳେ ତାଙ୍କର ଆଖି ବନ୍ଦ କରି ତାହାଙ୍କୁ ନିଆ ହେଉଥିଲା । ସାର୍ ଜର୍ଜ ୟଙ୍ଗ୍ ଲେଖିଛନ୍ତି : ହାରେମ୍ ଓ ତାହାର ହୃତ୍‌ପିଣ୍ଡ ହେଲା ପୃଥିବୀର ସବୁଠାରୁ ଅଜ୍ଞାତ ସ୍ଥାନ ।

ହାରେମ୍ ଗୋଟିଏ ପ୍ରାସାଦ ନୁହେଁ, ଏହା ପ୍ରାୟ ଗୋଟିଏ ଛୋଟ ଦେଶ । ତୁରସ୍କର ସୁଲତାନଙ୍କର ଏହି ହାରେମ୍‌ରେ ତିନିଶହ ବିବି ଥିଲେ । କିନ୍ତୁ ବାସିନ୍ଦା ଥିଲେ ଅସଂଖ୍ୟ । ରକ୍ଷୀବାହିନୀ, କଳାଧଳା ଖୋଜା । ତାହା ଭିତରେ ଥିଲା ସାମରିକ ବିଦ୍ୟାଳୟ । ତେର-ଚଉଦ ଗୋଟି ମସ୍‌ଜିଦ । ଦଶଗୋଟି ରୋଷେଇଖାନା ଦୁଇଗୋଟି ଟେକ୍ସଟ୍ କାରଖାନା, ଗୋଟିଏ ମଇଦା କଳ, ଦୁଇଗୋଟି ଡାକ୍ତରଖାନା, ଜେଲଖାନା, ବଗିଚା, ହ୍ରଦ ପ୍ରଭୃତି । ନାନାପ୍ରକାର କାରିଗର ଥିଲେ ପ୍ରାୟ ପାଞ୍ଚଶହ । କେହି ଗହଣା, କେହି ତଲୱାର, ପୋଷାକ, ବାଦ୍ୟଯନ୍ତ୍ର ତିଆରି କରୁଥିଲେ । ଏହି ସବୁ ଆୟୋଜନ, ତୁରସ୍କ କିମ୍ବା ଭାରତବର୍ଷରେ ସବୁ କିଛି କେବଳ ଜଣଙ୍କ ପାଇଁ ହେଉଥିଲା । ସେ ହେଉଛନ୍ତି ସୁଲତାନ କିମ୍ବା ବାଦଶାହ । ହାରେମ୍‌କୁ ଯିବା ବାଟର ନାମ ହେଲା—ସୁନେଲପଥ । ତାର ଦୁଇପଟେ ଧାଡ଼ିବାନ୍ଧି ଠିଆହୋଇ-ଥାଆନ୍ତି ରୂପସୀମାନଙ୍କର ଦଳ । ପ୍ରତ୍ୟେକେ ଅନ୍ୟଠାରୁ ଅଧିକ ସୁନ୍ଦରୀ । ତାଜମହଲ-ନୁରମହଲ – ଛବିବତୀ–-ମୁ-ଖାନୁମ, ଦୁର-ଇ-ଦୁରାମ, ଆକଲ୍‌ବେଗମ, ବଦମଚଶମ, ମୁଜୁକବଦନ, ମତଲବ୍ , ପେୟାର—ଏହିପରି କେତେ କଣ ନାମ ସେମାନଙ୍କର । ଏହି ନାମ ଗୁଡ଼ିକର ଅର୍ଥ ହେଲା—ମହଲର ମୁକୁଟ, ଘରର ଆଲୋକ; କେହି ମୁକ୍ତା, କେହିବା କେବଳ ରୂପସୀ ଅଥବା ପ୍ରିୟା । ସୁଲତାନଙ୍କ ପାଇଁ ବିଶାଳ ପୃଥିବୀ ମନ୍ଥନ କରି ଏହିସବୁ ମଣିମାଣିକ୍ୟମାନଙ୍କୁ ସଂଗ୍ରହ କରିହୋଇଥାଏ । ନୂଆ ହୋଇ ଆସିଥିବା ରୂପସୀକୁ ପୁରୁଣା ରୂପସୀମାନେ ଆଡ଼ଆଖିରେ ଅନାନ୍ତି । ସନ୍ଧ୍ୟା ବେଳୁ ତାହାର ସାଜସଜ୍ଜା ଆରମ୍ଭ ହୋଇଯାଏ । ହାରେମ୍‌ର ଖୋଜା-ପ୍ରଧାନ ନିଜେ ଠିଆହୋଇ ତାହାକୁ ଗାଧୋଇଦିଏ ।

ତାହାପରେ ପ୍ରସାଧନ । ଦାସୀମାନେ ତାକୁ ମନପ୍ରାଣ ଦେଇ ସଜାଇ ଦିଅନ୍ତି । ସେମାନେ ଜାଣନ୍ତି ଏହି ଝିଅକୁ ସୁଲତାନ ନଗଦ ଟଙ୍କା ଦେଇ କିଣି ନାହାନ୍ତି । ସୌଦାଗର ଉପହାର ପଠାଇଦେଇଛନ୍ତି । ତିନିଗୋଟି ରାତି ଶେଷରେ ଏହି ତରୁଣୀ ଜାଣିପାରିବ ସେ କେଉଁନାମ ପାଇଛି । ଏହା ହିଁ ହେଲା ନିୟମ । ଯଦି ସୁଲତାନଙ୍କର ପସନ୍ଦ ନ ହୁଏ ତେବେ ପୁଣି ସୌଦାଗର ପାଖକୁ ଏହି ତରୁଣୀ ଫେରିଯିବ । ପ୍ରାସାଦର ଦୁଆର ତାହାପାଇଁ ବନ୍ଦ । ହୁଏତ କୌଣସି ଅମୀର କିମ୍ବା ଅନ୍ୟ କୌଣସି କର୍ମଚାରୀର ହାରେମ୍‌ରେ ସ୍ଥାନ ପାଇପାରେ । ତେଣୁ ଦାସୀମାନେ

ଅତ୍ୟନ୍ତ ମନୋଯୋଗୀ । ସ୍ନାନପୂର୍ବରୁ ତେଣୁ ସମସ୍ତ ଦେହକୁ ନର୍ଲୋମ କରାଯାଏ । ବାଲରେ ଶାମ୍ପୁ ଦିଆଯାଏ । ଦେହରେ ସାବୁନ କମ୍ବା ବେସନ । ସ୍ନାନପରେ ଦେହରେ ଫୁଲର ତେଲ୍, ଅତର, ମେହେନ୍ଦି କେତେ କଣ ଦିଆହୁଏ । ତାହାପରେ ପୋଷାକ ବଦଳର ଅଧିଶ୍ୱରୀ "ଲଙ୍ଗୋଶ" ତାହାକୁ ଭଲ ପୋଷାକ ପିନ୍ଧାଇଦିଏ । କିଏ ଜାଣିଛୁ, ସୁଲତାନ ହୁଏତ ଏହି ଝିଅକୁ ପ୍ରଥମ ଦର୍ଶନ ସମୟରୁ ନିଜର ମନପ୍ରାଣ ସମର୍ପଣ କରିଦେଇଛନ୍ତି । ତେଣୁ ଦାସୀମାନେ କାହିଁକି ଈର୍ଷ୍ୟା କରି ଗୋଟିଏ ଝିଅର ଭବିଷ୍ୟତକୁ ଖରାପ କରିଦେବେ ।

ତାହାପରେ ପ୍ରତୀକ୍ଷା । କଳା ଖୋଜାମାନଙ୍କର ପ୍ରଧାନ ଡାକ ଦିଏ ସୁଲତାନ ଆସୁଛନ୍ତି । ମୁହଁରେ ସ୍ମିତହାସ, କ୍ଷିପ୍ର ତୀକ୍ଷ୍ଣ ଦୃଷ୍ଟି ନେଇ ଆସନ୍ତି ସୁଲତାନ । ସେ ଆଗେଇଯିବାବେଳେ ଧାଡ଼ିବାନ୍ଧି ଠିଆ ହୋଇଥିବା ରୂପସୀମାନଙ୍କ ମଧ୍ୟରୁ କାହାକୁ ନିଜ ହାତରେ ଧରିଥିବା ରୁମାଲ ବଢ଼ାଇଦିଅନ୍ତି । ହୁଏତ ସେ ତାହା ଧରିବାପୂର୍ବରୁ ତଳେ ପଡ଼ିଯିବାବେଳେ କୃଷ୍ଣାଙ୍ଗ ଖୋଜା ଟୋକିନିଏ ଆଉ ବଢ଼ାଇଦିଏ ଅନ୍ୟଜଣଙ୍କ ହାତକୁ ।

ସମସ୍ତେ ଜାଣିପାରନ୍ତି ଆଜି ତାଙ୍କ ଶୟନକକ୍ଷରେ କାହାର ନିମନ୍ତ୍ରଣ । ସେହି ଝିଅକୁ ସମସ୍ତେ କହିବେ 'ଗୁଜଦେ'—ଅର୍ଥାତ୍ ନଜରରେ ପଡ଼ିବା । ପ୍ରକୃତରେ ହାରେମ୍‌ରେ, ଯେ କୌଣସି ନାରୀପକ୍ଷରେ ଯେ କୌଣସି ରାତି ଗୋଟିଏ ପରୀକ୍ଷା । ସୁଲତାନଙ୍କର ଶୟନକକ୍ଷର ଖୋଜା ଆସି ଠିଆହୁଏ ସୌଭାଗ୍ୟବତୀର ଦୁଆରେ । ସେ ଯେତେବେଳେ ଅଭିସାରରେ ଯାଏ, ସେତେବେଳେ ଅନ୍ୟ ବେଗମ୍‌ମାନଙ୍କର ଘର ବନ୍ଦ ରଖିବାକୁ ହୁଏ । କାରଣ, କେହି ଯେପରି ତାକୁ ଦେଖି ନ ପାରନ୍ତି । କମ୍ପିତ ପଦ ନେଇ ସେ ଆସି ଠିଆହୁଏ ସୁଲତାନଙ୍କ ଶୟନ କକ୍ଷରେ । ତା'ପରେ ସମସ୍ତ ଆହୁରି ଅନିଶ୍ଚିତ ଓ ଗୁରୁତର । କାରଣ, ଏହି ରାତିରେ ତାହାର ଭାଗ୍ୟ ନିରୂପଣ ହୁଏ । ଯଦି ସେ ଏହି ରାତିରେ ମୋହିନୀ ନ ହୋଇ ପାରିଲା, ତେବେ କାଲି ସକାଳେ ସେ ଭିକାରୁଣୀ ହେବ ।

ସକାଳ ହେବାପୂର୍ବରୁ ଦୁଆରରେ ଠିଆ ହୋଇଥିବା ଖୋଜା ଘରେ ପଶି ଜଣାଇଦେବ ଯେ ରାତି ଶେଷ ହୋଇଯାଇଛି । ଏଥର ସ୍ୱପ୍ନଲୋକରୁ ନିଜ ମହଲକୁ ଫେରିବାକୁ ହେବ । ବାଦଶାହ ପୋଷାକ ବଦଳ କରନ୍ତି । ରାତିରେ ସେ ଯେଉଁ ପୋଷାକ ପିନ୍ଧିଥିଲେ ସେଗୁଡ଼ିକର ମାଲିକ ବର୍ତ୍ତମାନ ରାତିର ସଙ୍ଗିନୀ । ସେହି ଅମୂଲ୍ୟ ଧନକୁ ନେଇ ଭାଗ୍ୟବତୀ ନିଜ ଘରକୁ ଚାଲିଯାଏ । ତା'ପରେ, ହୁଏତ ସୁଲତାନଙ୍କ ତୃପ୍ତିର ଖବର ନେଇ ଉପହାରର ଡାଲି ଆସିବ—ନୂଆ ପୋଷାକ, ଗୋଟିଏ ହୀରାର ହାର, କେତେଗୋଟି ମୋହର । ଯେଉଁ ଝିଅ କେତେ

ଉନପୂର୍ବେ ଅତି ସାଧାରଣ ଚିଜ ଥିଲା, ସେ ହଠାତ୍ 'ଖାତୁନ୍'—ସୁଲତାନା ହୋଇଗଲା । ସୁଲତାନାର ଅର୍ଥ ହାରେମ୍‌ର ଅଧିଶ୍ୱରୀ ନୁହେଁ । ତୁରସ୍କ ସୁଲତାନଙ୍କର ଅନ୍ଦରର ପ୍ରକୃତ ଯିଏ କର୍ତ୍ତ୍ରୀ, ସେ ହେଲେ ବାଦଶାହ-ଜନନୀ—'ସୁଲତାନା ଭାଲିଦ୍ ।"

ମଧ୍ୟପ୍ରାଚ୍ୟରେ ମୁସଲମାନମାନଙ୍କର ଗୋଟିଏ ପ୍ରଚଳିତ କଥା—"ମୁସଲମ ପୁରୁଷର ଏକାଧିକ ସ୍ତ୍ରୀ ଆଇପାରେ, କିନ୍ତୁ ମା' ଜଣେ । ତାଙ୍କର ସମ୍ମାନ ସମସ୍ତଙ୍କ ଉପରେ ।" ହିନ୍ଦୁସ୍ଥାନରେ ତାଙ୍କର ନାମ ଥିଲା—'ପାଦଶାହୀ ବେଗମ ।' ସୁଲତାନଙ୍କର ଜ୍ୟେଷ୍ଠ ତନୟର ଯେ ଜନନୀ, ତାଙ୍କୁ କୁହାଯାଏ 'ବାସଖାଦନ-ଏଫେନ୍ଦି ।' ସମ୍ଭବତଃ, ଏହାଙ୍କୁ ହିନ୍ଦୁସ୍ଥାନରେ ଖାସମହଲ କୁହାହେଉଥିଲା । ତାହାପରେ 'ହାନୁମ ଆଫେନ୍ଦି' । ସେମାନଙ୍କର ଅନ୍ୟନାମ ଖାଦନ୍ । ଏହି ଦୁଇଜଣଙ୍କୁ ବାଦ ଦେଲେ ଅନ୍ୟ ବେଗମ୍‌ମାନେ କେବଳ ସହଚରୀ । ସେମାନଙ୍କର ଏକମାତ୍ର ଗୌରବ ହେଲା, ସୁଲତାନଙ୍କୁ ସେମାନେ ଦିନେ ଅଥବା କେତେ ଆନନ୍ଦିତ ମୁହୂର୍ତ୍ତରେ ପାଖରେ ପାଇଥିଲେ । ପୁଣି ହୁଏତ କେବେ ପାଇ ପାରନ୍ତି । ଏମାନଙ୍କୁ କୁହାଯାଉଥିଲା ଓଦାଲିକ୍; ଅର୍ଥାତ୍ ଶଯ୍ୟାସଙ୍ଗିନୀ ଦଳ ।

ପ୍ରକୃତରେ ହାରେମ୍ ହେଉଛି ପ୍ରମିଳା ରାଜ୍ୟ । ଏଠାରେ ସ୍ତ୍ରୀଲୋକମାନେ ସବୁ କାମ କରୁଥିଲେ । ସେମାନେ ଅବଶ୍ୟ ସମସ୍ତେ ଦାସୀ । କିନ୍ତୁ, ତାହା ସେମାନଙ୍କର ପରିଚୟ ନୁହେଁ । ସ୍ତ୍ରୀଲୋକମାନଙ୍କ ମହଲର ସୁପରିନ୍‌ଟେନ୍‌ଡେଣ୍ଟର ନାମ ହେଲା 'କେତ୍‌ଖୁଦା', ତାହାପର ପଦବୀ ହେଲା କୋଷାଧ୍ୟକ୍ଷ ବା 'ହାସନା-ଦାର' । ତାହାପରେ ତୃତୀୟ ଦଳ 'କାଲ୍‌ଫା' । ସମସ୍ତେ ଦାସୀ ହେଲେ ମଧ୍ୟ ସେମାନଙ୍କର କାମ ବିଭିନ୍ନ ପ୍ରକାରର ଥିଲା । ଆଉରଙ୍ଗଜେବଙ୍କ ସମୟରେ ବାଦଶାହୀ-ହାରେମ୍‌ରେ ବିଭିଗୀୟ ପ୍ରଧାନମାନଙ୍କର ନାମକରଣରୁ ଜଣାଯାଏ, ସେମାନେ ଦାସୀ ହେଲେ ମଧ୍ୟ ସାମାନ୍ୟ ନୁହନ୍ତି । ଯଥା—ଫାତିମାବାନୁ—ଅର୍ଥାତ୍ ଦାର୍ଶନିକ ମହିଳା, କାଦରଙ୍କବାନୁ—ଅର୍ଥାତ୍ କ୍ଷମତାଶାଳିନୀ ନୋଶାନବାବାନୁ, ଗୁଲସୁଲତାନବାନୁ, ଅର୍ଥାତ୍—ରାଜକୀୟ ଫୁଲ ଇତ୍ୟାଦି ।

ତା'ପରେ ସଙ୍ଗୀତ ବିଭାଗ । ସୁନ୍ଦରବାଈ, ସୁରସବାଈ, ଚୌଲିହାବାଈ, ଜାଲସ୍ୱାବାଈ, ନୟନକୋତ୍‌ବାଈ, କସ୍ତୁରୀବାଈ ଇତ୍ୟାଦି ।

ମୁସଲମାନ ହାରେମ୍‌ର ଅନ୍ୟ କେତେ ଜଣ ଦାସୀଙ୍କର ନାମ ମଧ୍ୟ ଥିଲା—ଗୁଲବ, ଧୃମେଲି, ନାର୍ଗିସ, ଗୁଲ୍-ଇ-ବଦମ୍, ନଇଲୁଫାର, ଗୁଲ୍-ଇ-ଆବ୍‌ବାସି,—ଅନାରକଲି ପ୍ରଭୃତି । ଏହି ନାମକରଣରୁ ଜଣାଯାଉଥିଲା, ଦାସୀ ହେଲେ ମଧ୍ୟ

ସେମାନଙ୍କର ଦେହ କିଛି ଥିଲା । ଅଧିକାଂଶ ଥିଲା ଫୁଲର ନାମ । କାରଣ, ଏତେ ଯତ୍ନ କରି ସଜାଉଥିବା ବଗିଚ୍ଚ, ଦେଶବିଦେଶରୁ ଖୋଜିଆଣିଥିବା ଫୁଲର ହାଟ ! କିଏ ଜାଣେ, କେତେବେଳେ ବାଦଶାହ, ଯିଏ କି ଭ୍ରମର, ଉଡ଼ିଆସି କେଉଁ ଫୁଲଉପରେ ବସିଯିବେ !

ହାରେମ୍—ଗୋଟିଏ ଆଶ୍ଚର୍ଯ୍ୟ ସ୍ୱର୍ଗ ! ଏଠାକୁ ଯେଉଁମାନେ ଆସନ୍ତି ସେମାନେ ଯାହା ପାଇବାପାଇଁ ଇଚ୍ଛା କରିଥାଆନ୍ତି, ତାହାଠାରୁ ମଧ୍ୟ ଅଧିକ କିଛି ପାଇ ଯାଆନ୍ତି—ଦାସୀରୁ ବେଗମ; ସାଧାରଣ ନର୍ତ୍ତକୀରୁ ସୁଲତାନା । ହାରେମ୍‌ରେ ଏପରି ଘଟଣା ବହୁତ ଘଟିଛି । ନାନା ବାଟଦେଇ ରୂପବତୀ ସ୍ତ୍ରୀମାନେ ଏହି ନକଲି ସ୍ୱର୍ଗକୁ, ନବାବ-ବାଦଶାହମାନଙ୍କର ରୂପମହଲକୁ ଆସୁଥିଲେ । ଦାରିଦ୍ର୍ୟ, ଦୁର୍ଭିକ୍ଷ, ଯୁଦ୍ଧ, ପେଟର କ୍ଷୁଧା ନେଇ ମାଆ ସ୍ତ୍ରୀଅକୁ ବିକ୍ରୀ କରିଦେଉଥିଲା । ମୋହର ଲୋଭରେ ଦସ୍ୟୁମାନେ ସୁଯୋଗ ନେଇ ଲୁଟ କରୁଥିଲେ । କେହି କେହି ମଧ୍ୟ ହାରେମ୍‌କୁ ନିଜ ଇଚ୍ଛାରେ ଆସୁଥିଲେ । ହାରେମ୍‌ର ଆକର୍ଷଣ ଦୁର୍ନିବାର । ଇସାବେଲ ଡନ୍ ଅବଶ୍ୟ ଅଲ୍ଲୀ-ହାଇଦରଙ୍କୁ ଭଲ ପାଇଥିଲା । ତାଙ୍କୁ ଜଣେ ପୁରୁଷ ଆକର୍ଷଣ କରିଥିଲ । କିନ୍ତୁ ଇତିହାସ ଜାଣେ, କୌଣସି ଜଣେ ପୁରୁଷ ନୁହେଁ, ହାରେମ୍ ନାମକ ଗୋଟିଏ ରହସ୍ୟ, ଚୁମ୍ବକ ପରି ଅନେକ ରୂପସୀଙ୍କୁ ଟାଣିଆଣିଥିଲା । ଉଚ୍ଚାଭିଳାଷୀ ବୁଦ୍ଧିମତୀ ସ୍ତ୍ରୀମାନଙ୍କ ପାଖରେ ହାରେମ୍ କେବଳ ବିଷାଦାଚ୍ଛନ୍ନ କ୍ଲାନ୍ତିକର ରହସ୍ୟାଲୋକ ନୁହେଁ; ହାରେମ୍ ଗୋଟିଏ ପ୍ରକାରର ବେହସ୍ତ । ଏଠାରେ ଅଭାବ ନାହିଁ । ଅତର୍କିତରେ ଲୁଣ୍ଠିତ ହୋଇଯିବାର ଭୟ ନାହିଁ । ହାରେମ୍, ଗୋଟିଏ ଅଦ୍ଭୁତ ପୃଥିବୀ ! ଏଠାରେ ଅସରା ବିଳାସ, ଅନନ୍ତ ସୁଯୋଗ, ତେଣୁ ଐତିହାସିକମାନେ କହିଛନ୍ତି, ଷୋଡ଼ଶ ଓ ସପ୍ତଦଶ ଶତକରେ ୟୁରୋପର ଅନେକ ସ୍ତ୍ରୀଅ ନିଜ ଇଚ୍ଛାରେ ନିଜକୁ ଦାସ-ବ୍ୟବସାୟୀମାନଙ୍କ ହାତରେ ସମର୍ପି ଦେଉଥିଲେ । ସେମାନେ ପୂର୍ବଭାଗର କୌଣସି ହାରେମ୍‌କୁ ଯିବାପାଇଁ ଇଚ୍ଛା କରୁଥିଲେ । କେତେକ ଅବଶ୍ୟ ଯାଇଥିଲେ । କିନ୍ତୁ, କେତେ ଜଣଙ୍କର ଇଚ୍ଛା ବା ପୂର୍ଣ୍ଣ ହେଉଥିଲା ? ଏମାନଙ୍କ ମଧ୍ୟରୁ ତୁରସ୍କ କିମ୍ବା ଭାରତରେ ଅନେକ ଟ୍ରାଜେଡ଼ିର ନାୟିକା ତାଲିକାଭୁକ୍ତ ହୋଇଥିଲେ ।

ମୋଷା ଚଢ଼େଇସାଥିରେ, ବ୍ୟଥାହତ ମନ ନେଇ, ଜଣେ ହାରେମ୍‌ବାସିନୀ ଦୀର୍ଘଶ୍ୱାସ ଓ କରୁଣ ଆର୍ତ୍ତକ୍ରନ୍ଦନ ସହିତ କଥା କହିଚାଲିଛି । ସେ କ'ଣ ବା କରିବ ? କାହାସାଥିରେ କଥା କହିବ ? ଗୀନଦ୍ୱନିଆର ମାଲିକ ଅକବରଶାହାଙ୍କର ହାରେମ୍‌ର ଘରେ ଘରେ ଅଛି ବିପୁଳ ଐଶ୍ୱର୍ଯ୍ୟ, ଦାସଦାସୀ, ଖୋଜାଙ୍କ ଦଳ, ଅଛି ଫୁଲ ଓ ଫଳରେ ଭରି ମନୋରମ ଉଦ୍ୟାନ । ସବୁ କିଛି ଅଛି; କିନ୍ତୁ ନାହିଁ

ଜଣେ, ଯାହାଙ୍କର ପଦେ କଥାରେ ଛୁଟିଛନ୍ତି ଅଦୃଶ୍ୟ ବୀଣାର ସୁର ବାଜିଉଠେ । ନଇଁଆସେ ଚେତନା ଉପରେ ଗୋଟିଏ ମିଠା ନିଶାପରି ମାଦକତା । ମାସ ପରେ ମାସ ବିତିଯାଇଛି । ସେ କିନ୍ତୁ ଆସନ୍ତି ନାହିଁ । ତେଣୁ ସେ କ'ଣ କରିବ ? ମନୋଦୁଃଖରେ ନିଜ ପୋଷା ଚଢ଼େଇ ଭ୍ରମରାଜ ସହିତ କଥା କୁହେ ଶାହାଜାଦୀ ବେଗମ୍ ଜାଲମା—ସମ୍ରାଟ୍ ଆକବରଙ୍କର ପୁତ୍ରବଧୂ । ଜାହାଙ୍ଗୀର, ଅର୍ଥାତ୍ ସେଲିମ୍ଙ୍କର ରାଜପୁତ ମହିଷୀ, ଯାହାଙ୍କର ଅନ୍ୟନାମ ଯୋଧବାଈ ବେଗମ୍ ।

ଯୋଧବାଈ ବେଗମ୍ଙ୍କ ମହଲକୁ ସେ କାହିଁକି ଆସୁନାହାନ୍ତି ? କେଉଁ ଆତଙ୍କ ନେଇ ଶାହାଜାଦୀ ସେଲିମାଙ୍କର ଚିନ୍ତାକ୍ଲିଷ୍ଟ ଦେହ ଥର-ଥର ଉଠେ ?

କିନ୍ତୁ ହଠାତ୍ ଅସମୟରେ ମହଲର ଦୁଆରରେ ଶୁଣାଗଲା—ଶାହାଜାଦୀ ବେଗମ୍ !

—କିଏ ? ଆରେ, ଆସନ୍ତୁ ଆସନ୍ତୁ ଶାହଜାଦା !

ଆଗରେ ଠିଆ ହୋଇଥିଲେ ଜାହାଙ୍ଗୀର, ଦୁଇ ଆଖିରେ ହସ ଉଛୁଳି ଉଠୁଥାଏ ।

—ଆପଣ କଣ ଏହି ଦାସୀ ଯୋଧବାଈ ବେଗମ୍‌ର ମହଲର ବାଟ ଭୁଲି ଯାଇଥିଲେ ?

—କିଛି ଦିନଧାଇଁ ରାଜକାର୍ଯ୍ୟରେ ଆଗ୍ରା ମଞ୍ଜିଲରେ ରହିବାକୁ ପଡ଼ିଥିଲା ସେଲିମା ! କଥା କହୁ କହୁ ପାଖକୁ ଅସି ମୁଣ୍ଡରେ ହାତ ବୁଲାଇଦେଇଥିଲେ ।

ଦୀର୍ଘଦିନପରେ ତାଙ୍କର ହାତର ସ୍ପର୍ଶରେ ଯେପରି ବିବଶ ହୋଇଗଲା ସେଲିମାର ଚେତନା । ତାର ଆଖିରେ ନଇଁଆସିଥିଲା ସ୍ୱପ୍ନ, ଅଳ୍ପଦିନ ମଧ୍ୟରେ ଏହି ବିଶାଳ ହିନ୍ଦୁସ୍ଥାନର ମାଲିକ ହେବେ ତାହାର ସ୍ୱାମୀ ! ସେ ହେବ ପ୍ରଧାନମହିଷୀ ! ଶାହେନଶା ଆକବରଙ୍କର ରାଜପୁତ ମହିଷୀ ଯୋଧବାଈଙ୍କ ପରି ସେ ମଧ୍ୟ ବିପୁଳ ଐଶ୍ୱର୍ଯ୍ୟମଧ୍ୟରେ ସାମ୍ରାଜ୍ଞୀ ପରି ବାସ କରିବ । କିନ୍ତୁ ଚମକିପଡ଼ି ସତେ ଯେପରି ନିଦରୁ ଉଠିପଡ଼ିଲା ଶାହାଜାଦୀ ବେଗମ୍ ! ତାହାର ବିଶ୍ୱସ୍ତ ଦାସୀ ଜାବେଦାକୁ ଡାକିଲା; କହିଲା—ଫୁଲ ନେଇଆ, ମାଳା ନେଇଆ, ନେଇଆ ସୁଗନ୍ଧ ସେରାଜ୍ଞା, ମୁଁ ଆଜି ବାସରଘର ମୋର ସଜାଇବି ।

ଯେତେବେଳେ ଦାସୀ ସହିତ ଶାହଜାଦୀ ବେଗମ୍ ସାଲିମା କଥା କହୁଥିଲା, ସେତେବେଳେ ତନ୍ମୟ ହୋଇ ରାଜକୁମାର ସେଲିମ ଆଉ ଜଣଙ୍କ କଥା ଧ୍ୟାନ

କରୁଥିଲେ । ସେ ଥିଲା ଆଜାରଗିୟାସ ବେଗର କନ୍ୟା—ମେହେର ଉନ୍ନିସା । କଅଁଳ ଆଳୁଅପରି ତାହାର ଦେହର ରଙ୍ଗ । ସୁଡ଼ୌଲ ମୁହଁ । ମନେ ହେଉଥିଲା ଆସମାନର ସୂର୍ଯ୍ୟ, ଚନ୍ଦ୍ରର ଆଲୋକ—ସବୁଜବନାନୀ—ଘନନୀଳ ଦିଗନ୍ତ ସବୁକିଛି ଦେଇ ଢଳଢଳ କରି, ଢଲୋଢ଼ମା କରି ତାହାକୁ ଗଢ଼ିଥିଲା ପ୍ରକୃତି । ଏହି ସେଲିମା ତାହାର ଦାସୀ ହେବାପାଇଁ ମଧ୍ୟ ଯୋଗ୍ୟା ନୁହେଁ ।

କିନ୍ତୁ, କିପରିଭାବରେ ସେ ମେହେରକୁ ଏହି ହାରେମ୍‌ରେ ଆଣି ରଖିବେ ? ଆକବର ଶାହାଙ୍କର ପୁତ୍ରର ଯେ କେବଳ ଏହି ରାଜପୁତ ମହିଷୀ ସେଲିମା ଅଛି ତାହା ନୁହେଁ; ଆହୁରି ଅନେକ ବେଗମ୍ ଅଛନ୍ତି । କିନ୍ତୁ ଏହି ସେଲିମାର ରକ୍ତରେ ରାଜପୁତ ଶୌର୍ଯ୍ୟ ବିଦ୍ୟମାନ । ସେ ସ୍ୱତନ୍ତ୍ର ମହଲରେ ବାସ କରେ ଆଉ ସ୍ୱପ୍ନ ଦେଖେ ପାଟରାଣୀ ହେବାପାଇଁ । ମେହେର୍‌କୁ ହାରେମ୍‌ରେ ଆଣି ରଖିଲେ ସେ ପ୍ରତିହିଂସାପରାୟଣା ହୋଇଉଠିବ, ହିଂସ୍ର ବାଘୁଣୀପରି ହୋଇଉଠିବ । ତାହାର ଅନ୍ଦରମହଲରେ ଅଶାନ୍ତିର ନିଆଁ ଜଳିଉଠିବ ।

ମେହେର୍ ଜଣଙ୍କର ବାଗ୍‌ଦତ୍ତା । କିନ୍ତୁ ଯେଉଁ ନାରୀର ରୂପ ତାଙ୍କର ମନତଳେ ଲାଳସାର ନିଆଁ ଜଳାଇଦେଇଛି, ତାହାକୁ ଯେପରି ଭାବରେ ହେଉ ସେ ହାରେମ୍‌ରେ ଆଣି ରଖିବେ । କୌଣସି ବାଧା ସେ ମାନିବେ ନାହିଁ । ପ୍ରୟୋଜନ ହେଲେ ମେହେର୍‌ର ଭାବୀସ୍ୱାମୀ ଶେର୍ ଆଫଗାନ ଖାଁକୁ ମଧ୍ୟ ଖତମ କରିଦେବାକୁ ହେବ, ଏପରିକି ସେଲିମାକୁ ମଧ୍ୟ ।

—କଣ ଏତେ ଭାବୁଛନ୍ତି ଶାହାଜାଦା ! ଜାଣିପାରେ କି ?

— ବାପାଙ୍କର ଦେହ ଭଲ ରହୁନାହିଁ ଶାହାଜାଦୀ ! ମୁଁ ବଡ଼ ଚିନ୍ତିତ ହୋଇ ପଡ଼ିଛି । ଟିକିଏ ହସି, ଦୁଶ୍ଚିନ୍ତାକୁ ଦୂର କରିଦେବାର ଚେଷ୍ଟା କରି ସେଲିମ୍ କହିଲେ—ସେରାଜୀ ନେଇଆସ ଶାହାଜାଦୀ ! ଫୁଲର ମାଳ ନେଇଆସ ! ଆଉ ତୁମେ ଗୀତଟିଏ ଗାଅ !

ଏହା କହି, ତାହାକୁ ଛାତି ପାଖକୁ ଟାଣିଆଣିଲେ । ଫୁଲପରି ଏହି କୋମଳ ଦେହକୁ ଦୁଇହାତରେ ନିପିଷ୍ଟ କରିବାପାଇଁ ଗୋଟାଏ ଅଦମ୍ୟ ବାସନା ତାଙ୍କର ରକ୍ତରେ ଯେପରି ନିଆଁ ଜଳାଇଦେଲା ।

ନା-ନା ଶାହାଜାଦା ! କଣ କରୁଛନ୍ତି ? କିନ୍ତୁ ଦୃଷ୍ଟି ସେତେବେଳେ ତାଙ୍କ ନୀଳ ଆଢ଼ୁଆଳରେ ଥିବା ସୁଡ଼ୌଲ ସ୍ତନ ଉପରେ ପଡ଼ିଥିଲା । ବନ୍ୟାର ଢେଉପରି ସେଲିମା ଉପରେ ଢଳାଢ଼ିପଡ଼ି ତାହାକୁ ଗ୍ରାସ କରିବାପାଇଁ ଇଚ୍ଛା କଲେ ସେଲିମ୍

—ନା-ନା, ଆପଣ କୁହନ୍ତୁ, କାହା କଥା ଭାବୁଥିଲେ ? ତାହାପରେ······

—ଆଚ୍ଛା ! ତାହାପରେ ତୁମେ ଧରିଦେବ ? ତେବେ ଶୁଣ ଶାହାଜାଦୀ ! ଗିୟାସ ବେଗ୍ ଘରେ ମେହେର୍‌କୁ ଦେଖି ମୋର ଆଖିରେ ନିଦ ନାହିଁ ।

—ମୁଁ ଜାଣେ ! କେବଳ ମୁଁ କାହିଁକି, ଏହି ରଙ୍ଗମହଲର ସମସ୍ତେ ଜାଣନ୍ତି, ଆପଣ ମେହେର୍‌ର ରୂପରେ ମଜ୍ଜି ଯାଇଛନ୍ତି । କିନ୍ତୁ, ଯଦି ତାହାକୁ ଏହି ହାରେମ୍‌କୁ ଆଣିବେ ତେବେ ତାହାପୂର୍ବରୁ ମୋତେ ବିଷ ଯୋଗାଡ଼ କରିଦେବେ ।

ହସିଉଠିଥିଲେ ଜାହାଙ୍ଗୀର । କହିଥିଲେ—ମୋର କହିବା ଉଚିତ ହେବ ନାହିଁ । କାରଣ, ସେ ମୋର ପୂଜନୀୟ ପିତୃଦେବ; ପୃଥିବୀର ଏପରି ଦେଶ ନାହିଁ ଯେଉଁ ଦେଶର ଝିଅକୁ ସେ ବିବାହ କରି ନ ଥିଲେ । ମୁଁ ତାଙ୍କର ପୁଅ ହୋଇ ଜଣେ ସେଲିମାକୁ ନେଇ ସନ୍ତୁଷ୍ଟ ରହିବି ? କେଉଁ ଅପରାଧଯୋଗୁ ମୁଁ ଆଉ ଜଣେ ବେଗମ୍‌କୁ ରଖିପାରିବି ନାହିଁ ?

—ନିଶ୍ଚୟ ପାରିବେ ! କିଏ ଅଛି ବାଧା ଦେବ କେଉଁଆଡ଼େ ? ସମସ୍ତ ପୃଥିବୀର ସୁନ୍ଦରୀ ଝିଅମାନଙ୍କୁ ଆଣି ହାରେମ୍‌ରେ ରଖନ୍ତୁ ! କିନ୍ତୁ, ମୋତେ ବିଦାୟ କରିବା ପରେ । ତାହାପରେ ·········

ପର୍ଦ୍ଦା ଆରପଟେ ଜାବେଦୀର ରଙ୍ଗିନ ଓଢ଼ଣି ଥରେ ଦେଖାଦେଇ ପୁଣି ଲୁଚିଗଲା । ତାହାକୁ କଣ ଗୋଟାଏ ଇଙ୍ଗିତ କଲା ସେଲିମା ।

ଜାବେଦୀ ସ୍ୱର୍ଣ୍ଣପାତ୍ରରେ ଗୋଲାପର ସୁଗନ୍ଧରେ ଭରି ସେରାଜୀ ନେଇ-ଆସିଲା । ଆଉ ଗୋଟାଏ ହାତରେ ଥିଲା ରୂପାଥାଳିଆରେ ଯୂଇ ଓ ମଲ୍ଲୀଫୁଲର ମାଳା ଏବଂ ଅଜସ୍ର ଫୁଲ । ଆଗରେ ରଖିଦେଇ କୁର୍ନିସ କରି କହିଲା—ହଜରତ ସେଲିମଙ୍କ ଶାହାଜାଦା ! ତାହାପରେ ଚାଲିଯାଇଥିଲା ।

—ନିଅନ୍ତୁ, ସେରାଜୀଟିକିଏ ପିଇଦିଅନ୍ତୁ ! ମିଷ୍ଟ ହି ଶୁଣାଗଲା ସେଲିମାର କଣ୍ଠସ୍ୱର ।

ସନ୍ଦେହର କୁଟିଳ ଛାୟା ତାଙ୍କ ଆଖିରେ ପଡ଼ିଥିଲା ।

ଏତେ ଆଗ୍ରହରେ, ତାଙ୍କର ରାଜପୁତ ମହିଷୀ ତାହାଙ୍କୁ ମଦ ପିଇବାପାଇଁ ଦେଉଛୁ ! ଯାହା ଘରେ କେବେହେଲେ ମଦ ରହେ ନାହିଁ କିମ୍ବା ଯେ କେବେହେଲେ ମଦ ଛୁଏଁ ନାହିଁ

ରଙ୍ଗିନ କାଚଗ୍ଲାସରେ ସେରାଜୀ ଢାଳିଲି ସେଲମା । କିନ୍ତୁ ହୁକୁମ ଦେଲେ ରାଜକୁମାର । ତୁମର ପୋଷାପକ୍ଷୀ ଖିମରାଜକୁ ନେଇଆସ ଶାହାଜାଦୀ ।

ପଞ୍ଜୁରୀପାଖକୁ ଯାଇ ପାଣି ପିଇବା ଗିନାରେ ଟିକିଏ ସେରାଜୀ ଢାଳିଦେଲେ ସେଲିମ । ସୁବାସିତ ମଦକୁ ପାଣି ଭାବି ଥଣ୍ଟ ବୁଡ଼ାଇବାମାତ୍ରେ ଚଢ଼େଇଟି ଢଳି ପଡ଼ିଥିଲି ।

ଉଚ୍ଚଶବ୍ଦ କରି ହସିଉଠିଥିଲେ ଭବିଷ୍ୟତ ବାଦଶାହା, ସୁଚତୁର ଓ ତୀକ୍ଷ୍ଣ ବୁଦ୍ଧିସମ୍ପନ୍ନ ସେଲିମ !

ଆର୍ତ୍ତନାଦ କରିଉଠିଥିଲି ସେଲମା । ଏ କଣ ? ସେରାଜୀରେ କିଏ ବିଷ ମିଶାଇଦେଇଛି ? କାହିଁକି ? କାହିଁକି ? ମୁମୂର୍ଷୁ ଚଢ଼େଇର କ୍ଷୀଣ ସ୍ୱର ସେତେ-ବେଳଯାଏ ମଧ୍ୟ ଶୁଣାଯାଉଥାଏ । ବୋଧହୁଏ, ହାରେମ୍‌ର ଚିରନ୍ତନ ଏହି ପ୍ରେମ-ପ୍ରତିହିଂସାର ନିଷ୍ଠୁର ବଳି ସେ କାହିଁକି ହେଲା, କିପରି ହେଲା ? ତାହା ହିଁ ସେ ଜାଣିବାକୁ ଚାହୁଁଥିଲା ।

—ପ୍ରହରୀ, ପ୍ରହରୀ ! ରାଜକୁମାରଙ୍କର ଚିତ୍କାରରେ ମହଲ କମ୍ପି ଉଠିଲା । ତୁମକୁ ସାରାଜୀବନ ମାଟିତଳେ ଥିବା ଅନ୍ଧକାର କାରାଗାରରେ ବନ୍ଦୀକରି ରଖିବି । ଯେଉଁ ରୂପର ଗର୍ବରେ ତୁମେ ଅନ୍ଧ, ସେହି ରୂପ ତୁମର·········

—ବିଶ୍ୱାସ କରନ୍ତୁ ଶାହଜାଦା, ମୁଁ ବିଷ ମିଶାଇ ନାହିଁ । ଆପଣ ମୋର ସ୍ୱାମୀ । ମୁଁ ଆପଣଙ୍କୁ ଭଲପାଏ ।

ଏହା କହି କାନ୍ଦି-କାନ୍ଦି ରାଜକୁମାରଙ୍କର ଗୋଡ଼ଉପରେ ଲୋଟିପଡ଼ିଥିଲି ସେଲମା ।

ପ୍ରେମ, ଭଲପାଇବା, ପାପପୁଣ୍ୟ, ଆଉ ହଜାର ହଜାର କାମନାର ଅନୁଭୂତିରେ ଭରା ଏବଂ କେତେ ଅଜସ୍ର ଘଟଣାର ସୂତ୍ରଜଡ଼ିତ ଏହି ହାରେମ୍‌ଆଡ଼କୁ ଅନାଇ ଶତାବ୍ଦୀପରେ ଶତାବ୍ଦୀ ଧରି ଯେପରି କିଏ ପଚାରୁଛି— କାହିଁକି, କାହିଁକି ?

କିନ୍ତୁ, ଏହି କାହିଁକିର ଉତ୍ତର ସେ କୌଣସି ଦିନ ପାଇ ନାହିଁ; କେହି ମଧ୍ୟ କୌଣସି ଦିନ ପାଇ ନାହିଁ । କାରଣ, ହାରେମ୍ ବଡ଼ ରହସ୍ୟମୟ ସ୍ଥାନ । ସେଠାରେ କେବଳ ରାଜପୁତ୍ରକନ୍ୟା ସେଲମା ନୁହେଁ, ଯୁଗ-ଯୁଗ ଧରି ଆହୁରି କେତେ ଶତ-ଶତ ସୁନ୍ଦରୀ ନାରୀ ନୀରବରେ ଆଖିର ଲୁହ ଝରାଇଛନ୍ତି । ଆତ୍ମଘାତୀ ହୋଇଛନ୍ତି ।

ଆତତାୟୀର ହାତରେ ପ୍ରାଣହଂସାପାଇଁ ପୁଣି କହତ ହୋଇଛନ୍ତି । ପୁଣି ବର୍ଷାର କଦମ୍ବ ଫୁଲପରି କେତେ ବେଗମ୍ ରୋମାଞ୍ଚିତ ହୋଇଛନ୍ତି ପ୍ରେମିକର ପ୍ରିୟ-ସମ୍ଭାଷଣରେ, ନିବିଡ଼ ଆଲିଙ୍ଗନମଧ୍ୟରେ । ତାଙ୍କର ଦେହମନ ବଚନ ଆବେଗରେ ଭରିଯାଇଛି ।

ତୁର୍କୀ-ହାରେମ୍ର ସେହି ଦୁଃଖର କାହାଣୀ ଅତି ଭୟାନକ । ବିଦେଶୀ ନାବିକମାନେ ହଜିଲା ଧନ ଖୋଜିବାପାଇଁ ପାଣିରେ ବୁଡ଼ିବାକୁ ଯାଇ ନିତାନ୍ତ ଆକସ୍ମିକଭାବରେ ଗୋଟିଏ ହୃଦୟ-ବିଦାରକ କାହାଣୀ ଖୋଜି ପାଇଥିଲେ । ସ୍ୱଚ୍ଛ ପାଣିତଳେ ଅଜସ୍ର ଶବ ଏଠିସେଠି ପଡ଼ିଥିଲା । ସେମାନେ ଯେପରି ଠିଆ ହୋଇ ନାଚୁ-ଥିଲେ । ନୂପୁର ପରିବର୍ତ୍ତେ ସେମାନଙ୍କ ଗୋଡ଼ରେ ପଥର ବନ୍ଧା ହୋଇଥିଲା । ନାବିକମାନେ ଡରିଯାଇ ପାଣିଭିତରୁ ଜାହାଜକୁ ଉଠିଆସିଥିଲେ । ସମସ୍ତ ପୃଥିବୀ ଏହି କାହାଣୀ ଶୁଣି କାନ୍ଦିଥିଲା । ବସ୍ଫରସ୍ର ଏହି କାହାଣୀ ପୃଥିବୀ ଶୁଣିଥିଲା ।

ତୁର୍କୀ-ହାରେମ୍ରେ ପ୍ରାୟ ଏହିପରି ଘଟୁଥିଲା । କୌଣସି ଷଡ଼ଯନ୍ତ୍ରର ସନ୍ଧାନ ପାଇଲେ ଅପରାଧୀକୁ ନିର୍ଦ୍ଦୟଭାବରେ ବସ୍ଫରସ୍ର ନୀଳଜଳ ଭିତରକୁ ଫୋପାଡ଼ି ଦିଆହେଉଥିଲା । ସୁଲ୍ତାନ ନିଜେ ଏହାର ବିଚାରକ ଥିଲେ । 'କିସଲାର ଆଗା' ଘାତକ-ହାତରେ ସ୍ତ୍ରୀଟିକୁ ନେଇ ଦେଉଥିଲା । ତାହାକୁ 'ବୋସ୍ତାନ-ଜୀ-ବସ୍ଇ' ବୋଲି କୁହାଯାଉଥିଲା । ସାଥିରେ ଜଣେ ଖୋଜାକୁ ନେଇ ରାତିର ଅନ୍ଧକାରମଧ୍ୟରେ ସେ ଡଙ୍ଗା ଭସାଇଦେଉଥିଲା । ଡଙ୍ଗା ସହିତ ଆଉ ଗୋଟିଏ ଡଙ୍ଗା ଦଉଡ଼ିଦ୍ୱାରା ବନ୍ଧାହେଉଥିଲା । ସେଥିରେ ସ୍ତ୍ରୀଟିର ଶବ ରଖାଯାଉଥିଲା । ଗୋଡ଼ରେ ବିରାଟ ପଥର ବାନ୍ଧି ଦିଆହେଉଥିଲା । ପାଣି ମଝିକୁ ଯାଇ, ଦଉଡ଼ିକୁ କାଟିଦେଇ, ଡଙ୍ଗାକୁ ବୁଡ଼ାଇଦେଇ ଘାତକ ଫେରିଆସୁଥିଲା । ଅନେକ ସମୟରେ ଜୀବନ୍ତ ସ୍ତ୍ରୀମାନଙ୍କୁ ମଧ୍ୟ ପାଣି ଭିତରକୁ ଫୋପାଡ଼ି ଦିଆ ହେଉଥିଲା ।

ତୁର୍କୀ-ହାରେମ୍ରେ ଏପରି କାହାଣୀ ଅଛି ଯେତେବେଳେ ଏକସଙ୍ଗେ ତିନି-ଶହ ସ୍ତ୍ରୀଙ୍କୁ ବୁଡ଼ାଇଦେଇ ମାରିଦିଆଯାଇଥିଲା । ସେମାନଙ୍କର ଅପରାଧ ହେଲା ଷଡ଼ଯନ୍ତ୍ର । ନିଜର ଭାଗ୍ୟକୁ ସେମାନେ ମାନି ନ ନେଇ, ଅର୍ଥାତ୍ ସ୍ତ୍ରୀମାନେ ଆହୁରି କିଛି ଇଚ୍ଛା କରିଥିଲେ । ସେଥିପାଇଁ ସେମାନଙ୍କୁ ଜୀବନ ଦେବାକୁ ପଡ଼ିଥିଲା । କୌଣସି ନାରୀକୁ ପାଣିରେ ବୁଡ଼ାଇ ମାରିବାପୂର୍ବରୁ କଣ କୌଣସି ପ୍ରକୃତ ଅପରାଧ ଖୋଜି ବାହାର କରିବାକୁ ହେଉଥିଲା ସୁଲ୍ତାନଙ୍କୁ ? ନା, ତାହା ନୁହେଁ । ସୁଲ୍ତାନ ଇବ୍ରାହିମ କେବଳ ମନକୁ ଟିକିଏ ଆନନ୍ଦିତ କରିବାପାଇଁ ହାରେମ୍ର ସମସ୍ତ ସ୍ତ୍ରୀମାନଙ୍କୁ ପାଣିରେ ବୁଡ଼ାଇ ମାରିଦେଇଥିଲେ । ଏଥିରେ ସୁଲ୍ତାନଙ୍କର

କ୍ଷତ କିଛି ହୋଇ ନ ଥିଲା । ବିଳାସୀ ସୁଲତାନ ପୁଣି ହାରେମ୍‌କୁ ନୂଆ ସୁନ୍ଦରୀ ଝିଅ ଆଣୁଥିଲେ ।

ସୁଲତାନ୍ ଶାହରିୟରଙ୍କର କୌଣସି କୈଫିୟତ୍ ଆବଶ୍ୟକ ହେଉ ନ ଥିଲା । ପ୍ରତିଦିନ ସନ୍ଧ୍ୟାରେ ମନୋନୀତ ତିଲୋତ୍ତମାକୁ ନେଇ ଶୟନକକ୍ଷକୁ ପ୍ରବେଶ କରୁଥିଲେ । ଏହା ହିଁ ଥିଲା ଏସିଆର ହାରେମ୍‌ମାନଙ୍କର ପ୍ରଚଳିତ ରୀତି । ଭୀରୁ କପୋତୀପରି ନାୟିକା ସୁଲତାନ ବାଦଶାହଙ୍କର ବିଳାସଶଯ୍ୟା ଆଡ଼େ ଆଗେଇ ଯାଉଥିଲା । କାମାତୁର ଶାହରିୟର ପ୍ରବଳ ଆଗ୍ରହରେ ଦୁଇ ହାତ ବଢ଼ାଇ ଅଭିସାରିକା ନାୟିକାକୁ ଗ୍ରହଣ କରୁଥିଲେ । ତାଙ୍କପରି ପ୍ରେମିକ ଯେ କୌଣସି ନାରୀପକ୍ଷେ ଗୌରବର ବିଷୟ । ହାରେମ୍-କନ୍ୟା ନିଜକୁ ସମର୍ପଣ କରିଦେଉଥିଲା । କିନ୍ତୁ ସେ ଜାଣିପାରୁ ନ ଥିଲା ଏହି ପ୍ରଥମ ମିଳନରାତ୍ରି ତାହାର ଜୀବନର ଶେଷ ରାତ୍ରି । ଶାହରିୟର ତାହାକୁ ସକାଳ ହେବାମାତ୍ରେ ନିଜ ହାତରେ ହତ୍ୟା କରୁଥିଲେ । କୌଣସି ଦିନ ଗୋଟିଏ ରମଣୀ ତାଙ୍କର ଦ୍ୱିତୀୟ ଥର ପାଇଁ ସଙ୍ଗିନୀ ହୋଇପାରି ନାହିଁ । କାରଣ ହେଲା ସେହି ନାରୀ ଯେପରି ଅନ୍ୟ କୌଣସି ପୁରୁଷପ୍ରତି ଆସକ୍ତି ଦେଖାଇ ନ ପାରିବ ।

ସିରିଆର କୁଖ୍ୟାତ ନାୟକ ଦାଜାର ପାଶା ଏହିପରି ବ୍ୟାଧିରେ ପୀଡ଼ିତ ଥିଲେ । ଜଣେ ହାରେମ୍-କନ୍ୟା ଗୋଟିଏ ଶ୍ୱେତାଙ୍ଗ କ୍ରୀତଦାସକୁ ଭଲ ପାଇଥିଲା । ସେହି ଅପରାଧପାଇଁ ସବୁ ଶ୍ୱେତାଙ୍ଗ କ୍ରୀତଦାସମାନଙ୍କୁ ହତ୍ୟା କରାଯାଇଥିଲା ।

ହାରେମ୍‌ର ଅଧିପତିମାନଙ୍କ ମନରେ ଗୋଟିଏ ପ୍ରଶ୍ନ—ନାରୀକୁ ବିଶ୍ୱାସ ନାହିଁ । ଧଳା କାଉ ଖୋଜି ମିଳିପାରେ ମାଛଗୋଡ଼ର ଚିହ୍ନ ମିଳିପାରେ; କିନ୍ତୁ ରମଣୀ ମନର ଖବର କେହି କୌଣସି ଦିନ ଖୋଜି ପାଇବେ ନାହିଁ ।

ଏହା ହିଁ ହେଲା ହାରେମ୍‌ର ଭୂମିକା । ହିନ୍ଦୁସ୍ଥାନରେ ମଧ୍ୟ ଏହିପରି ହୃଦୟ-ବିଦାରକ କାହାଣୀ ଅଛି । ଆଜମୀରରେ ଗୋଟିଏ ସୁନ୍ଦରୀ ଝିଅକୁ ଗ୍ରୀବାଯାଏ ମାଟିରେ ପୋତି ରଖାଯାଇଛି । ହାତ ଦୁଇଟି ଖୋଲିଥାଏ । ହାରେମ୍‌ରେ ସେ ଜଣେ ଦାସୀ । ତା'ର ଅପରାଧ ହେଲା ଯେ ଜଣେ ଖୋଜାକୁ ଭଲ ପାଇଥିଲା । ଅନ୍ୟ ଖୋଜାମାନେ ତାକୁ ଧରାଇଦେଇଥିଲେ । ହୁକୁମ ହେଲା—ଖୋଜାକୁ ହାତୀ ଗୋଡ଼-ତଳେ ଚିପି ମାରିଦିଅ । ଆଉ ଝିଅକୁ ଜୀବନ୍ତ ଅବସ୍ଥାରେ ମାଟିରେ ପୋତିରଖ । ତିନି ଦିନ ଦୁଇରାତି ତାକୁ ଏହିପରି ରଖିବାକୁ ହେବ ।

ହିନ୍ଦୁସ୍ଥାନରେ ସମ୍ରାଟ୍ ଜାହାଙ୍ଗୀରଙ୍କର ସେତେବେଳେ ରାଜତ୍ୱ । ଏହି ଦାସୀ ଜଣଙ୍କର ମାଲିକ ସ୍ୱୟଂ ନୁରଜାହାନ । ଜାହାଙ୍ଗୀରଙ୍କ ଦରବାରର ଇଂରେଜ-ଦୂତ ଟମାସ୍‌ରୋ ଏହି କଥା ଲେଖିଯାଇଛନ୍ତି ।

ଛୋଟ ଗୋଟିଏ ଶବ୍ଦ—ହାରେମ୍ । ଯାହାର ଅର୍ଥ ନିଷିଦ୍ଧ ସ୍ଥାନ । କେବେ କେଉଁ ଦେଶରେ ପ୍ରଥମେ ହାରେମ୍ ପ୍ରତିଷ୍ଠା ହୋଇଥିଲା ତାହାର କୌଣସି ସଠିକ୍ ତଥ୍ୟ ଜଣାଯାଇ ନାହିଁ । ତେବେ କୋରାନ୍‌ରେ ନିର୍ଦ୍ଦେଶ ଅଛି, ଯାହା ସୁନ୍ଦର, ଯାହା ମୂଲ୍ୟବାନ୍, ତାକୁ ଲୋକମାନଙ୍କ ସମ୍ମୁଖରେ ଦେଖାଇବା ଉଚିତ ନୁହେଁ । ସ୍ତ୍ରୀଜାତିକୁ ପ୍ରାୟ ଆମେ ଫୁଲସହିତ ତୁଳନା କରିଥାଉ । ତେଣୁ ସେମାନଙ୍କର ସ୍ଥାନ ପର୍ଦ୍ଦାତଳେ ।

ନିକୋଲାଇ ମାନୁସି, ଆଉରଙ୍ଗଜେବଙ୍କ ସମୟରେ ଭାରତକୁ ଆସିଥିଲେ । ସେ ବହୁତ କଥା ଏହି ହାରେମ୍ ଉପରେ ଲେଖିଯାଇଛନ୍ତି ।

ଆକବରଙ୍କ ରାଜତ୍ୱ ସମୟରେ ଭିନସେଣ୍ଟ ସ୍ମିଥ ଆସିଥିଲେ ଭାରତକୁ । ସେ ଲେଖିଯାଇଛନ୍ତି, ବାଦଶାହୀ ହାରେମ୍‌ଗୁଡ଼ିକ ପ୍ରାୟ ଗୋଟିଏ ଗୋଟିଏ ସହର ପରି । ଏଠାରେ ପ୍ରାୟ ପାଞ୍ଚ ହଜାର ରମଣୀ ବାସ କରୁଥିଲେ ।

ଆରବ୍ୟ ରଜନୀର ଅନୁବାଦକ ଇ-ଡବଲିଉ-ଲେନ୍ ସାହେବ ୧୮୨୫ ମସିହାଠାରୁ ୧୮୪୯ ମସିହାଯାଏ ମିଶରରେ ଥିଲେ । ସେ ବିଶ୍ଳେଷଣ କରି ଦେଖାଇଛନ୍ତି— ଏହି ହାରେମ୍ କାହିଁକି ? କୋରାନ୍‌ରେ ଅଛି ସ୍ତ୍ରୀଲୋକମାନେ ଆଖିର ଦୃଷ୍ଟିକୁ ସଯତ କରିବେ । ସତୀତ୍ୱକୁ ସର୍ବଦା ସେମାନେ ରକ୍ଷା କରିବାପାଇଁ ଚେଷ୍ଟା କରିବେ । ତେଣୁ ହାରେମ୍ ଓ ବୁର୍ଖା ବ୍ୟତୀତ ଆଉ କୌଣସି ଉପାୟ ନାହିଁ । ସେ କହିଛନ୍ତି ଯେ ମିଶରର ସ୍ତ୍ରୀଲୋକମାନଙ୍କର ଭାରତୀୟ ମୁସଲମାନ ସ୍ତ୍ରୀଲୋକଙ୍କ ପରି ଏତେ ଅବରୋଧ ପ୍ରଥା ନ ଥିଲା ।

ଆକବରଙ୍କ ଯୁଗର ଏକମାତ୍ର ପ୍ରାମାଣିକ ଦଲିଲ 'ଆଇନ-ଇ-ଆକବରୀ' 'ଆକବରନାମା'ରୁ ଅନେକ କିଛି ଏହି ହାରେମ୍ ବିଷୟରେ ଆବୁଲଫଜଲ, ତୋଡ଼ରମଲ୍ଲ ପ୍ରଭୃତି ଲେଖିଥିବା କଥା ଜଣାଯାଏ । ଆକବରଙ୍କ ହାରେମ୍‌ରେ ଇରାନୀ, ତୁର୍କୀ, ଇହୁଦୀ, ଖ୍ରୀଷ୍ଟାନ, ରାଜପୁତ ରମଣୀମାନେ ଥିଲେ । ସେମାନଙ୍କ ଦାସୀମାନଙ୍କୁ ମିଶାଇ ପ୍ରାୟ ପାଞ୍ଚ ହଜାର ଜଣ ଥିଲେ । ପ୍ରତ୍ୟେକଙ୍କ ପାଇଁ ଆଲଗା ଘର ଥିଲା । ସ୍ତ୍ରୀ-ଦାସୀମାନଙ୍କ ମଧ୍ୟରେ ସବୁଠାରୁ ବିଶ୍ୱସ୍ତ ଦାସୀକୁ ସମ୍ରାଟ୍ ଦାରୋଗା ଭାବରେ ନିଯୁକ୍ତ କରୁଥିଲେ । ଦାରୋଗା ବ୍ୟତୀତ, ହାରେମ୍‌ର କର୍ମଚାରୀ, ତହସିଲଦାର,

କୋଷାଧ୍ୟକ୍ଷ ପ୍ରଭୃତି ମଧ୍ୟ ଥିଲେ । ଦାସୀ, ଖୋଜାମାନେ ୨୦ ଟଙ୍କାଠାରୁ ୩୦ ଟଙ୍କା ପର୍ଯ୍ୟନ୍ତ ଦରମା ପାଉଥିଲେ ।

ଆଗ୍ରାଦୁର୍ଗ ଦୁଇ ଭାଗ ଥିଲା । ବାହାରଆଡ଼କୁ ଆମଖାସ୍, ଦେଓ୍ୱାନଖାସ୍ ଦରବାର ଗୃହ ଥିଲା । ଭିତରପଟକୁ ଯମୁନା ନଦୀ ଆଡ଼େ ଥିଲା ବାଦଶାହାଙ୍କର ହାରେମ୍ । ହାରେମ୍‌ର ମହିଷୀମାନଙ୍କର ପ୍ରତ୍ୟେକ ଘରର କାନ୍ଥ ଥିଲା ଧଳା ମାର୍ବଲ ପଥରର । ଆଉ ସେଥିରେ ବିଖ୍ୟାତ ଶିଳ୍ପୀମାନଙ୍କଦ୍ୱାରା ଚିତ୍ର ଅଙ୍କାଯାଇଥିଲା ।

ପ୍ରତ୍ୟେକ ବେଗମ୍‌ଙ୍କ ମହଲର ସାଜସଜ୍ଜା ଅତି ସୁନ୍ଦର ଥିଲା । କିନ୍ତୁ ଆକବରଙ୍କ ପାଟରାଣୀ ରାଜପୁତ-ମହିଷୀ ଯୋଧବାଈଙ୍କ ମହଲର ଶୋଭାର ତୁଳନା ନ ଥିଲା । ସେ ଥିଲେ ହିନ୍ଦୁକନ୍ୟା, ରାଜପୁତ ରମଣୀ । ତାଙ୍କର ଅସମ୍ଭବ ପ୍ରତିପତ୍ତି ଯୋଗୁ ଆକବର ମାଛମାଂସ ନ ଖାଇ ନିରାମିଷ ଆହାର କରୁଥିଲେ ।

ହାରେମ୍ ବୋଲି ଶୁଣିଲେ ମନେହୁଏ ତାହା ଅସଂଖ୍ୟ ରୂପସୀମାନଙ୍କର ଆବାସ । କିନ୍ତୁ ସେଠାରେ ପ୍ରେମ, ଭଲପାଇବା, ହିଂସା-ବିଦ୍ୱେଷ ଓ ବ୍ୟର୍ଥତାର ଦୀର୍ଘଶ୍ୱାସ ମଧ୍ୟ ଶୁଣାଯାଏ ।

ତୁର୍କୀ-ହାରେମ୍‌ର ଗୋଟିଏ ଝିଅ କଥା ଏଠାରେ ଉଲ୍ଲେଖ କରୁଛୁ । ଷୋଡ଼ଶ ଶତାବ୍ଦୀର ଶେଷଭାଗର କଥା । ସୁଲେମାନଙ୍କ ପରେ ସିଂହାସନକୁ ଆସିଥାଆନ୍ତି ତୃତୀୟ ମୁରାଦ । ସୁଲତାନ-ଜନନୀ ନୁରବାନୁ ସୁଲତାନ, 'ସୁଲତାନା ଭାଲିଦ' । ମୁରାଦ ଅପଦାର୍ଥ । ତାହାଲାଗି ରାଜ୍ୟଶାସନର ଭାର ନେଇଥାଆନ୍ତି ତାହାର ମାଆ । ବାର୍ଦ୍ଧକ୍ୟରେ ସେ କ୍ଷମତାର ମୋହରେ ଆଚ୍ଛନ୍ନ । ପୁଅହାତରେ ଶାସନ-କ୍ଷମତା ଟେକିଦେବାପାଇଁ ସେ ଆଦୌ ଇଚ୍ଛା କରନ୍ତି ନାହିଁ । କିନ୍ତୁ, ଅବଶିଷ୍ଟ ହାରେମ୍‌ର ଇଚ୍ଛା ଅନ୍ୟ ପ୍ରକାରର । ସେଠାରେ ତୀବ୍ର ପ୍ରତିଦ୍ୱନ୍ଦ୍ୱିତା ଆରମ୍ଭ ହୋଇଯାଇଥାଏ ତରୁଣ ସୁଲତାନଙ୍କର ପ୍ରଥମା 'ଖାଦିନ୍' ପଦପାଇଁ । ଯିଏ 'ଖାସମହଲ' ହେବ ତାହା ପାଖରେ ସୁଲତାନା ଭାଲିଦଙ୍କୁ ପରାଜୟ ସ୍ୱୀକାର କରିବାକୁ ହେବ । ଭେନିସର ଗୋଟିଏ ଝିଅ ନାମ ତାର ସଫି, ରୂପରେ ଗୁଣରେ ସମସ୍ତଙ୍କୁ ମୁଗ୍ଧ କରି ଏହି ଆସନ ପାଇଁ ଆଗେଇଆସିଥିଲା । ପିଲାଦିନରେ ତୁର୍କୀ ଦାସବ୍ୟବସାୟୀଙ୍କ ହାତରେ ପଡ଼ି-ଯାଇଥିଲା । ତେଣୁ ଏହି ସୌଭାଗ୍ୟକୁ ସେ ହାତରୁ ଛାଡ଼ିଦେବାପାଇଁ ରାଜି ନୁହେଁ । ମୁରାଦ ନିଜେ ତାହାର ରୂପରେ ମୁଗ୍ଧ । କିନ୍ତୁ ଚିନ୍ତା କଲେ ସୁଲତାନା-ଭାଲିଦ । ଗୋପନରେ ସେ ହୁକୁମ ପଠାଇଲେ, ଯେଉଁଠାରେ ଯେତେ ସୁନ୍ଦରୀ ରୂପସୀ ଅଛନ୍ତି ସେମାନଙ୍କୁ ଖୋଜିଆଣି ସୁଲତାନଙ୍କ ହାରେମ୍‌ରେ ହାଜର କରିବାପାଇଁ । ଟଙ୍କା

ପାଇଁ ଆଦୌ ଭାବନା କର ନାହିଁ । ଦାସ-ବ୍ୟବସାୟୀମାନେ ରୂପର ହାଟରେ ଦାମ୍ ବଢ଼ାଇଦେଲେ । ହାରେମ୍‌ରେ ରୂପସୀମାନଙ୍କର ମେଳା ବସିଗଲା । ସୁଲ୍‌ତାନା-ଖାଲଦଙ୍କର ଚକ୍ରାନ୍ତ ବ୍ୟର୍ଥ ହେଲା ନାହିଁ । ସଫି ସେଠାରେ ନିକ୍ଷିପ୍ତ ହୋଇଗଲା । ରୂପସୀଙ୍କ ମେଳାଭିତରେ ସଫିକୁ ବାଦଦେଇ ମୁରାଦ ହଜିଗଲେ । କିନ୍ତୁ ସେଥିପାଇଁ ସଫି ଆଦୌ ଦୁଃଖିତ ନୁହେଁ ।

ସେ 'ଖାଉନ'ର ଅସଲ ପ୍ରାପ୍ୟ ପାଇବାଲାଗି ଇଚ୍ଛା କରେ ଓ ସୁଲ୍‌ତାନା-ଖାଲଦଙ୍କର କ୍ଷମତାର ଅବସାନ ଘଟାଇବାକୁ ହେବ । ଯେଉଁ ମତଲବ ନେଇ ସୁଲ୍‌ତାନା-ଖାଲଦ, ନିଜର ପୁଅକୁ ବିଳାସ-ସାଗରମଧ୍ୟରେ ନିକ୍ଷେପ କରିଥିଲେ, ସେହି ମତଲବ ନେଇ ସଫି ନିଜ ସ୍ୱାମୀଙ୍କୁ ସୁନ୍ଦରୀମାନଙ୍କ ମେଳାଭିତରକୁ ଠେଲିଦେଲେ । କ୍ଲାନ୍ତ ଅବସନ୍ନ ସୁଲ୍‌ତାନ ଯେତେବେଳେ ସୁନ୍ଦରୀମାନଙ୍କୁ ନେଇ ସ୍ୱପ୍ନଜଗତ ଭିତରେ ଦିନ ବିତାଉଥିଲେ, ସଫି ସେତେବେଳେ ଗୋପନରେ ଚିଠି ପଠାଉଥିଲା କ୍ୟାଥରିନ-ଡି-ମେଡ଼ିସିଙ୍କ ପାଖକୁ—ତୁରସ୍କ ଯେପରି ଭେନିସକୁ ଆକ୍ରମଣ ନ କରେ ।

ସିଗ୍ନୋରା ନାମକ ଗୋଟିଏ ଇହୁଦୀ-ସ୍ତ୍ରୀ ଥିଲା-ଜହରତକୁ ହାରେମ୍‌କୁ ବିକ୍ରୀ କରିବାପାଇଁ ଆସୁଥିଲା । ସଫି ତାହାରି ମାଧ୍ୟମରେ ଭେନିସର ଦୂତଙ୍କ ସହିତ ଯୋଗାଯୋଗ ସ୍ଥାପନ କରିଥିଲା । ତୁରସ୍କକୁ ସେ ଯୁଦ୍ଧ କରିବାପାଇଁ ଦେବ ନାହିଁ ।

ମୁରାଦଙ୍କୁ ନ ଜଣାଇ ପ୍ରଥମ କାମରେ ସଫି ସଫଳତା ଲାଭ କଲା । ଏଥର ଦ୍ୱିତୀୟ ସ୍ୱପ୍ନକୁ ପୂରଣ କରିବାକୁ ହେବ ।

ସ୍ୱପ୍ନପରି ରାଜତୁଲ୍ୟ ଲାଗି ସଫିର କୋଳରେ ଆସିଲା ପୁତ୍ରସନ୍ତାନ । ତାହାକୁ ସିଂହାସନରେ ବସାଇବାକୁ ହେବ । ନିଜର ପୁଅ ହେବ ସୁଲ୍‌ତାନ ଓ ସେ ନିଜେ ହେବ ସୁଲ୍‌ତାନା-ଖାଲଦ । ହାରେମ୍‌ର ଚକ୍ରାନ୍ତ ଯୋଗୁ ସଫି ପ୍ରଥମା ଖାଉନ ହୋଇପାରି ନ ଥିଲା । ସୁତରାଂ ଚଳନ୍ତି ନିୟମଯୋଗୁ ତାହା ସମ୍ଭବ ହୋଇପାରି ନ ଥିଲା ।

୧୫୯୫ ମସିହାରେ ସେହି ସୁଯୋଗ ଆସିଥିଲା । ବ୍ୟାଧି-ଜର୍ଜରିତ ମୁରାଦ ଅକାଳରେ ମୃତ୍ୟୁବରଣ କଲେ । ତେଣୁ ସୁଲ୍‌ତାନା-ଖାଲଦଙ୍କର ଅନ୍ୟ ପୁଅମାନେ ସିଂହାସନପାଇଁ ଦାବୀ ଜଣାଇଲେ । ସଫିର ଷଡ଼ଯନ୍ତ୍ରପାଇଁ ଜଣଜଣ କରି ଊଣେଇଶି ଜଣ ବାଦଶାଜାଦାଙ୍କୁ ପ୍ରାଣ ହରାଇବାକୁ ହୋଇଥିଲା । ସିଂହାସନରେ ନିଜର ପୁଅକୁ ବସାଇ ସଫି ରାଜତ୍ୱ ଚଳାଇବାକୁ ଲାଗିଲା ।

ବର୍ତ୍ତମାନ ସେ ନିଜେ ସୁଲତାନା-ଖଲିଦ । ଭୂତପୂର୍ବ ସୁଲତାନା-ଖଲିଦଙ୍କ ପରି ତାହାର ମଧ୍ୟ ଅଦ୍ଭୁତ କ୍ଷମତାର ଲାଳସା । ତରୁଣ ସୁଲତାନଙ୍କୁ ମଧ୍ୟ ସେ ବିଳାସର ପଙ୍କକୁଣ୍ଡ ମଧ୍ୟକୁ ପେଲିଦେଲା । ନୂଆ ସୁଲତାନ ଯେତେବେଳେ ସେହି ରୂପସୀ-ମହଲରେ ନିମଜ୍ଜିତ, ସେତେବେଳେ ସର୍ପି ରାଜତ୍ୱ ଚଳାଉଥାଏ । କିନ୍ତୁ ଏହି କାହାଣୀ ଦିନେ ଶେଷ ହୋଇଯାଇଥିଲା । ଦିନେ ରାତି ପାହିଲାବେଳକୁ ଦେଖାଗଲା ଯେ ସୁଲତାନା-ଖଲିଦ ନିଜ ବିଛଣାରେ ମୃତ୍ୟୁବରଣ କରି ଶୋଇଛନ୍ତି । ତାହାଙ୍କୁ କିଏ ବେକ ଚପି ହତ୍ୟା କରିଥିଲା ।

ଏହିପରି ଉତ୍ଥାନ-ପତନର ବହୁତ ଗଳ୍ପ ହିନ୍ଦୁସ୍ଥାନର ହାରେମ୍‌ରେ ଦେଖାଯାଇଛି । ଲକ୍ଷ୍ନୌରେ ନାସିରଉଦ୍ଦୀନଙ୍କ ଅମଳରେ ମଧ୍ୟ ଏହିପରି ଘଟଣା ଘଟିଥିଲା । ସେ ଥିଲେ ସୌଖୀନ ନବାବ । ତାଙ୍କ ହାରେମ୍‌ରେ ଇଉରୋପୀୟ ତରୁଣୀ ମଧ୍ୟ ଥିଲେ । କିନ୍ତୁ ଖାସମହଲ ଥିଲା ସମ୍ରାଟ୍ ଶାହଆଲମଙ୍କର ଜଣେ ଦୌହିତ୍ରୀ । ସେ ଥିଲା ସୁଶିକ୍ଷିତା, ସର୍ବଗୁଣସମ୍ପନ୍ନା । ଖାମଖେୟାଲି ନବାବଙ୍କୁ ଆଦୌ ବରଦାସ୍ତ କରିପାରୁ ନ ଥିଲା ଏହି ଗର୍ବିତା ଶାହାଜାଦୀ । ସେ ନିଜ ମହଲରେ ନିର୍ବାସିତା ପରି ଜୀବନଯାପନ କରୁଥିଲା ।

ନାସିରଉଦ୍ଦୀନଙ୍କ ପାଇଁ ତାହାର ଟିକିଏ ହେଲେ ଆଗ୍ରହ ନ ଥିଲା । ନବାବଜାଦାଙ୍କ ହାରେମ୍‌ରେ ଅସଂଖ୍ୟ ସୁନ୍ଦରୀ ତରୁଣୀ ଥିଲେ । ସେମାନଙ୍କ ମଧ୍ୟରୁ ଆଫଜଲ ମହଲ ବୋଲି ଜଣେ ତରୁଣୀଙ୍କୁ ସେ ନିଜର ସଙ୍ଗିନୀ କରିନେଇଥିଲେ । ୧୮୨୫ ମସିହାରେ ସମସ୍ତେ ଶୁଣିଲେ ଆଫଜଲମହଲ ପୁତ୍ରବତୀ ହୋଇଛି । ନବାବ ପୁଅର ନାମ ଦେଇଥିଲେ—ମୁନ୍ନାଜାନ । ଶିଶୁ ମୁନ୍ନାଜାନଙ୍କୁ ଦୁଧପିଆଇ ଲାଳନ କରିବା-ଲାଗି ସ୍ୱାସ୍ଥ୍ୟବତୀ ସ୍ତ୍ରୀର ଆବଶ୍ୟକ । କାରଣ ନବାବଜାଦାମାନେ ନିଜ ମାଆର ଦୁଧ ପିଇବାଲାଗି ପାଆନ୍ତି ନାହିଁ । ଶହେ ମାଆମାନେ ହାରେମ୍‌ର ଦୁଆରେ ଆସି ଭିଡ଼ ଜମାଇଲେ । କିନ୍ତୁ ଜଣକୁ ବାଛିନିଆଗଲା । ନାମ ତାହାର ଦୁଲାରୀ । ସେ ଥିଲା ହିନ୍ଦୁଘରର ଝିଅ । ବାପମାଆ ଥିଲେ ଅତି ଗରିବ । ଫତେମୁରାଦ ବୋଲି ଜଣେ ପ୍ରତିବେଶୀ ପାଖରୁ ତାହାର ବାପା ମାତ୍ର ପାଠିଏ ଟଙ୍କା କରଜ କରିଥିଲା । କିନ୍ତୁ ଟଙ୍କା ପରିଶୋଧ କରିବାପୂର୍ବରୁ ସେ ମରିଯାଇଥିଲା । ତେଣୁ ଏହି ଟଙ୍କା ଋଣଲାଗି ମାଆ ଓ ଝିଅଙ୍କର ଜେଲ ହେଲା । ଦୁଲାରୀକୁ ଜମାରଖି ତାହାର ମାଆ ଟଙ୍କା ସନ୍ଧାନରେ ବାହାରିଗଲା । ଫତେମୁରାଦର ଜଣେ ଭଉଣୀ ଦୁଲାରୀକୁ ଦେଖି ଅତ୍ୟନ୍ତ ଆନନ୍ଦିତ । ଜେଲଖାନାରୁ ଦୁଲାରୀକୁ ସେ ନିଜ ଘରକୁ ନେଇ-ଆସିଥିଲା । ଦୁଲାରୀ ସେଠାରେ ଦିନକୁ ଦିନ ବଡ଼ ହେବାକୁ ଲାଗିଲା । ରୂପବତୀ ଦୁଲାରୀ ଥିଲା ବନ୍ୟହରିଣୀ ପରି ଚଞ୍ଚଳ । ଘରେ ରୁସ୍ତମ ବୋଲି ଗୋଟିଏ ଯୁବକ ଥିଲା । ସେ ଦୁଲାରୀର ପ୍ରେମରେ ପଡ଼ିଗଲା । ଫତେମୁରାଦ ଏହି କଥା ଜାଣିପାରି

ବୃଦ୍ଧଙ୍କୁ ବିବାହ କରାଇଦେଲେ । ଏହାର କିଛି ଦିନପରେ ଫତେମୁରାଦ ମରିଗଲେ । ରୁସ୍ତମ, ଦୁଲାରୀକୁ ନେଇ ସେଠାରୁ ଚାଲିଆସିଲା ।

ବୁଲିବୁଲି ସେମାନେ ଲକ୍ଷ୍ନୌକୁ ଆସିଲେ । ସହିସର କାମ ରୁସ୍ତମ କରୁଥିଲା । କିନ୍ତୁ ଯୌବନବତୀ ଦୁଲାରୀ ମନରେ ନଗରର ହାଓ୍ୱା ଲାଗିଯାଇଥାଏ । ତାହାର ଘରକୁ ବହୁ ପ୍ରକାରର ଲୋକ ଆସୁଥାଆନ୍ତି । ଏହି ସମୟରେ ତାହାର ଗୋଟିଏ ପୁତ୍ରସନ୍ତାନ ଜନ୍ମ ହୋଇଥିଲା । ତାହାପରେ ଗୋଟିଏ ଝିଅ ମଧ୍ୟ ଜନ୍ମ ହୋଇଥିଲା ।

କେହି କୁହନ୍ତି ଏମାନଙ୍କର ବାପ ରୁସ୍ତମ, କେହି କେହି କୁହନ୍ତି ତାଙ୍କର ପ୍ରତିବେଶୀ ଜଣେ କମାର ନ ହେଲେ ଜଣେ ମାହୁନ୍ତ । ବହୁଭୋଗ୍ୟା ସେହି ଦୁଲାରୀ ନବାବଙ୍କର ହାରେମ୍‌କୁ ଆସିଥିଲା ମୁନ୍ନାଜାନକୁ ନିଜ ଛାତିରୁ ଦୁଧ ପିଆଇ ଲାଳନ-ପାଳନ କରିବାଲାଗି ।

କୌଣସି ହାରେମ୍‌ରେ ଜାତିପାଇଁ ଦୁର୍ଭାବନା ନାହିଁ । କିଏ କେଉଁଠାରୁ ଆସିଛି ସେଥିପାଇଁ ମଧ୍ୟ ଦୁର୍ଭାବନା ନ ଥିଲା । ଶୁଣାଯାଏ, ଲକ୍ଷ୍ନୌର ଜଣେ ନବାବ ଆମଜାଦ ଅଲ୍ଲୀ ଜଣେ ଫୁଲବାଲୀକୁ ବିବାହ କରିଥିଲେ କେବଳ ପ୍ରତିହିଂସାପାଇଁ । ତାଙ୍କର ଜଣେ ପ୍ରିୟ ଦାସୀର ଫୁଲପରି ମୁହଁକୁ ଜ୍ୱଳନ୍ତ ନିଆଁରେ ପୋଡ଼ିଦେଇଥିଲେ ନବାବଙ୍କର ପ୍ରଧାନପତ୍ନୀ ଆଉଲିୟା ବେଗମ୍ । ଏହି ଝିଅଟି ଆସିଥିଲା ନବାବ-ଜାଦାଙ୍କର ଲାଳନପାଇଁ । କିନ୍ତୁ ଆମଜାଦ ଅଲ୍ଲୀ ତାହାକୁ ରାତିପାଖକୁ ଟାଣିନେଇଥିଲେ । ପ୍ରଧାନପତ୍ନୀ, ଖାସମହଲ ଖବର ଶୁଣିଲେ ଯେ ଦାସୀ ହୋଇ ମଧ୍ୟ ଏହି ଝିଅଟି ବେଗମ୍‌ଙ୍କ ପରି ଆଚରଣ କରୁଛି । ସେ ମଧ୍ୟ ଅନ୍ୟାନ୍ୟ ଦାସୀମାନଙ୍କୁ ଶୁଣାଇଦେଲା ଯେ ତାହାର ଗର୍ଭରେ ନବାବଙ୍କର ସନ୍ତାନ । ସେ ଅତିଶୀଘ୍ର ମାଆ ହେବ । ଏହି କଥା ଶୁଣି ରାଗରେ ଜଳିଉଠିଲେ ଆଉଲିୟା ବେଗମ୍ । ତିନେ ସାପପରି ଫୋଁସ ମାରିଲେ । ଧୂମନ୍ତ ରୂପସୀର ମୁହଁ ଉପରେ ଜଣେ କେହି ଜଳନ୍ତା ଅଙ୍ଗାର ଢାଳିଦେଇଯାଇଥିଲା । ତେଣୁ ଆମଜାଦ ଅଲ୍ଲୀ ଏହି କଥାର ପ୍ରତିଶୋଧ ନେଇଥିଲେ ଜଣେ ଫୁଲବାଲୀକୁ ବିବାହ କରି । ଆଉଲିୟା ବେଗମ ସେଦିନ ମଧ୍ୟ ନିଜର କ୍ରୋଧକୁ ଗୋପନ ରଖିପାରି ନ ଥିଲେ । ନିଜର ସ୍ୱାମୀଙ୍କୁ ସେ ଧିକ୍‌କାର କରିଥିଲେ । କିନ୍ତୁ ଆମଜାଦ ଅଲ୍ଲୀ କେବଳ କହିଥିଲେ, ମୁଁ କୋରାନ ଶରିଫକୁ ଅମାନ୍ୟ କରି ନାହିଁ । ଏବେ ମଧ୍ୟ ଇଚ୍ଛା କଲେ ମୁଁ ଆଉ ଜଣେ ଦୁଇ ଜଣଙ୍କୁ ବିବାହ କରିପାରେ ।

ହାରେମ୍- ଏକ ଅଦ୍ଭୁତ ପୃଥିବୀ । ଏଠାରେ ଏକମାତ୍ର ଛାଡ଼ପତ୍ର ହେଲା ରୂପ ଓ ଯୌବନ । ଏହି ରୂପଯୌବନ ଯାହାର ଅଛି, ତାହାର ଅନ୍ୟ ପରିଚୟ-

ଗୌଣ । ଦିଲ୍ଲୀର ହାରେମ୍‌ରେ ମିଶର, ଇଟାଲି, ଗ୍ରୀସ୍, ରୁଷିଆ ପ୍ରଭୃତି ନାନା ଦେଶର ଝିଅମାନଙ୍କୁ ଦେଖିବାକୁ ମିଳୁଥିଲା ।

ବିଖ୍ୟାତ ରାଜପୁତ୍ର ବେଗମ୍ ଥିଲେ ଜନିଁୟାର ଝିଅ । ହାରେମ୍‌ରେ ସ୍ଥାନ ପାଇବାପରେ ବାଦଶାଙ୍କ ପାଖରେ ଧର୍ମଯୋଗୁ ସମସ୍ତେ ମୁସଲମାନ । ଆକବର କିନ୍ତୁ ଥିଲେ ଉଦାର ସମ୍ରାଟ୍ । ବେଗମ୍‌ମାନଙ୍କର ବ୍ୟକ୍ତିଗତ ଧର୍ମ ନେଇ ସେ ଆଦୌ ଚିନ୍ତା କରୁ ନ ଥିଲେ । ତାଙ୍କ ହାରେମ୍‌ରେ ହିନ୍ଦୁଘରର ଝିଅ ମଧ୍ୟ ଶିବପୂଜା କରୁଥିଲେ । ହାରେମ୍‌ରେ ଧର୍ମ ସେତେ ଗୁରୁତର ପ୍ରଶ୍ନ ନୁହେଁ ! ଅସଲ ପ୍ରଶ୍ନ ଥିଲା, ଦେଖ କିଏ ଅଛ ! ଏହି ସ୍ୱର୍ଗଲୋକର ଅଧିପତିଙ୍କୁ ଝିଅଟି ଖୁସି କରିପାରିବ ତ ?

ହିନ୍ଦୁଶାସ୍ତ୍ରରେ ଅଛି; ନଦୀ, ନାରୀ ଓ କୁଳର କୌଣସି କିଛି ଖୋଜିବା ଦରକାର ନାହିଁ । କିନ୍ତୁ ବାଦଶାହୀ ନ୍ୟାୟ କୁହେ, ସବୁକିଛି ବାହ୍ୟ । ଅସଲ ହେଲା ରୂପ ଓ ଯୌବନ । ଶାଜାହାନ ତମାମ ହାରେମ୍-ଅଧିପତିମାନଙ୍କ ମନର କଥା ସୁନ୍ଦରଭାବରେ ବୁଝାଇ କହିଛନ୍ତି । ତାଙ୍କ ଅମଳରେ ଦିଲ୍ଲୀରେ 'କାଞ୍ଚନୀ' ନାମକ ଗୋଟିଏ ନର୍ତ୍ତକୀ ସମ୍ପ୍ରଦାୟ ଥିଲା । ପ୍ରତି ସପ୍ତାହରେ ଦୁଇ ଦିନ ସେମାନେ ନାଚିବା ପାଇଁ ଆସୁଥିଲେ । ସେମାନେ ଥିଲେ ସୁଶିକ୍ଷିତା, ସୁନ୍ଦରୀ ନର୍ତ୍ତକୀଦଳ । ଅନ୍ୟ କୌଣସି ସ୍ଥାନରେ ସେମାନେ ନାଚୁ ନ ଥିଲେ । କିନ୍ତୁ ସେମାନଙ୍କ ଘରେ ଲୁବ୍ଧ ଦର୍ଶକମାନଙ୍କର ଗୋଡ଼ ନିଶ୍ଚୟ ପଡ଼ୁଥିଲା । ସାମାଜିକ ଦୃଷ୍ଟିରେ ସେମାନଙ୍କ ସ୍ଥାନ ଅତିନୀଚ ଥିଲା । ଦିନେ କିନ୍ତୁ ହଠାତ୍ ଏହି କାଞ୍ଚନବାଲାଙ୍କ ମଧ୍ୟରୁ ଜଣଙ୍କର ପ୍ରେମରେ ପଡ଼ିଗଲେ ସମ୍ରାଟ ଶାଜାହାନ ।

ଅମୀର ଓ ମଉଲବିମାନେ ତୋବା ତୋବା କହିଥିଲେ ଏମାନଙ୍କର ମନକଥା ବୁଝିପାରି । ମନେ ହୁଏ, ସୁରସିକ ସମ୍ରାଟ ଗୋଟିଏ ବୟେତ୍ ଶୁଣାଇ କହିଥିଲେ— "ମିଠାଇ ନେକ୍‌ହର ଦୋକାନ କିସ୍‌ବାସାଦ ?" ଅର୍ଥାତ୍, ଯେ କୌଣସି ଦୋକାନରୁ କିଣିଲେ ମଧ୍ୟ ମିଠାଇର ମିଠା ସମାନ ।

ସୁତରାଂ, ନାସିରଉଦ୍ଦୀନ ଯେଉଁ ଦିନ ଦୁଲହ୍ଲଙ୍କୁ ଦେଖି ଚମକିଉଠିଥିଲେ, ସେଦିନ ତାଙ୍କର ରୁଚିବିକାର ଘଟିଥିଲା ବୋଲି କହିହେବ ନାହିଁ । ପ୍ରକୃତରେ ରୂପ ଥିଲା ଦୁଲହ୍ଲର । ପିତା ଗାଜୀଉଦ୍ଦୀନ ସେତେବେଳେ ମଧ୍ୟ ବଞ୍ଚିଥିଲେ । ନାସିରଉଦ୍ଦୀନ କହିଥିଲେ, ସେ ଦୁଲହ୍ଲଙ୍କୁ ବିବାହ କରିବାକୁ ଚାହାନ୍ତି । ଗାଜୀଉଦ୍ଦୀନ ଏଥିରେ ନିଜର ମତ ଦେଇଥିଲେ । ଦାଣ୍ଡର ଝିଅ ଦୁଲହ୍ଲ ବେଗମ୍ ହୋଇଗଲା । ଏହା ଥିଲା ୧୮୨୭ ମସିହାର ଘଟଣା । ତହିଁ ପରବର୍ଷ ନାସିରଉଦ୍ଦୀନ ଲକ୍ଷ୍ନୌର ସିଂହାସନରେ ବସିଲେ । ଦୁଲହ୍ଲର ନାମ ହେଲା 'ମାଲିକାଜାମାନୀ'—ସମସ୍ତର

ରାଣୀ । ଏହି ରାଣୀ ପୁଅର ନାମ ଦେଇଥିଲେ କୈସ୍ୱାନ । ଗାଜିଉଦ୍ଦୀନଙ୍କର ଜଣେ ଝିଅଙ୍କ ସହିତ ସେ କୈସ୍ୱାନର ବିବାହ ଦେଇଥିଲ । କନ୍ୟାର ବିବାହ ହୋଇଥିଲ ପରିବାରର ଜଣେ ନବାବଜାଦାଙ୍କ ସହିତ । ଏଠାରେ ମଧ୍ୟ ଅଙ୍କରହିଲ ନାହିଁ ଦୁଲହି । ସେ ନିଜପାଇଁ ନଜରାନା ମାଗିଥିଲ ବାର୍ଷିକ ଛଅ ଲକ୍ଷ ଟଙ୍କା । ନାସିରଉଦ୍ଦୀନ୍ ତାହା ମଞ୍ଜୁର କରିଦେଲେ । ତାହାପରେ ଦୁଲହି ଆବେଦନ ଜଣାଇଥିଲ, କୈସ୍ୱାନଙ୍କୁ ଭବିଷ୍ୟତର ନବାବ ବୋଲି ଘୋଷଣା କରାହେବ । ନାସିରଉଦ୍ଦୀନ ସେତେବେଳେ ଦୁଲହିର ଦାସ । ତେଣୁ ସେ କହିଲେ—ହଁ, ତାହା ହିଁ ହେବ । ଲକ୍ଷ୍ନୌର ବ୍ରିଟିଶ ରେସିଡେଣ୍ଟ ନବାବଙ୍କ ପାଖରୁ ଚିଠି ଲେଖିଥିଲେ । ସେ ଘୋଷଣା କରିଥିଲେ କୈସ୍ୱାନ୍ ତାଙ୍କର ପୁଅ ଏବଂ ସିଂହାସନର ଉତ୍ତରାଧିକାରୀ ।

ରେସିଡେଣ୍ଟ କିନ୍ତୁ ବଡ଼ ଅସହାୟଭାବରେ ଉତ୍ତର ଦେଲେ—ଆମେ ନବାବଙ୍କର ବକ୍ତବ୍ୟକୁ ଅବହେଳା କରୁ ନାହୁଁ । କିନ୍ତୁ, ଅସଲ କଥା ହେଲ, ଲକ୍ଷ୍ନୌର ସମସ୍ତେ ଜାଣନ୍ତି, ତାଙ୍କ ମାଆ ଯେତେବେଳେ ପ୍ରାସାଦରେ ସ୍ଥାନ ପାଇଥିଲେ, ସେତେବେଳେ କୈସ୍ୱାନ୍ ତିନବର୍ଷର ବାଳକ । ନବାବ କହିଥିଲେ କିଏ ମୋର ପୁଅ, ସେକଥା କଣ ଜନସାଧାରଣଙ୍କଠାରୁ ତାହାଙ୍କୁ ଜାଣିବାକୁ ହେବ ? ସେ ମଧ୍ୟ ଏହି କଥା ଗଭର୍ଣ୍ଣରଜେନେରାଲଙ୍କୁ ଜଣାଇଥିଲେ । କେବଳ ସେତିକ ନୁହେଁ, ଗଭର୍ଣ୍ଣର-ଜେନେରାଲ ଯେତେବେଳେ ଲକ୍ଷ୍ନୌକୁ ଆସିଥିଲେ, ସେତେବେଳେ ନବାବଙ୍କ ତରଫରୁ ଅଭ୍ୟର୍ଥନା ଜଣାଇବାଲାଗି ସେ କୈସ୍ୱାନଙ୍କୁ ପଠାଇଥିଲେ ।

ରେସିଡେଣ୍ଟ ବଡ଼ ଚକିତ ହେଲେ । ସେ ନାସିରଉଦ୍ଦୀନଙ୍କୁ ମନେ କରାଇ ଦେଇଥିଲେ ଯେ ମୁନ୍ନାଜାନ ତାଙ୍କର ପୁଅ, କୈସ୍ୱାନ୍ ନୁହେଁ । ରେସିଡେଣ୍ଟ ସାହେବଙ୍କୁ ମୃତ ନବାବ ଗାଜିଉଦ୍ଦୀନ୍, ମୁନ୍ନାଜାନର ଜନ୍ମବେଳେ ଆନନ୍ଦବାର୍ତ୍ତା ଜଣାଇଥିଲେ । ନସୀରଉଦ୍ଦୀନ୍ କହିଲେ—ତାହାଙ୍କୁ ମୁଁ ମିଛକଥା କହିଥିଲି । ନିର୍ଲଜ ନବାବ ଆହୁରି ଜଣାଇଥିଲେ—ମୁନ୍ନାଜାନର ମାଆ ସହିତ ମୁଁ କୌଣସି ଦିନ ଘରବାସ କରି ନ ଥିଲି । ନବାବଙ୍କର ଏହି ବକ୍ତବ୍ୟକୁ ରେସିଡେଣ୍ଟ ସାହେବ ବାଧ୍ୟ ହୋଇମାନି ନେଇଥିଲେ ।

୧୮୩୬ ମସିହା କଥା । ଦିନ ଗଡ଼ିଚାଲିଥିଲ । ଦୁଲହିର ସୌଭାଗ୍ୟର ସୂର୍ଯ୍ୟ ଅପରାହ୍ନରେ ପହଞ୍ଚିଲ । ନାସିରଉଦ୍ଦୀନ୍ ରେସିଡେଣ୍ଟ ସାହେବଙ୍କୁ ନୂଆକଥା ଚିଠିରେ ଲେଖିଲେ । ନୂଆକଥା ଥିଲ—ମୁନ୍ନାଜାନ ତାଙ୍କର ପୁଅ ନ ଥିଲ । କୈସ୍ୱାନ୍ ମଧ୍ୟ ନୁହେଁ । ଘଟଣାଚକ୍ରରେ ତାହାଙ୍କୁ ମିଛ କହିବାକୁ ହୋଇଥିଲ ।

ଅସଲ ସତ୍ୟ ହେଲ; ତାଙ୍କର କୌଣସି ପୁଅ ନ ଥିଲ । ମନ୍ତ୍ରୀ ଆଗାମୀର ମଧ୍ୟ ଏହି ମର୍ମରେ ସାକ୍ଷ୍ୟ ଦେଇଥିଲେ । ମୁନ୍ନାଜାନର ଜନ୍ମର ଦୁଇବର୍ଷ ପୂର୍ବରୁ ବେଗମ, ଆଫଜଲମହଲର ସହିତ ନବାବଙ୍କର ମୁହଁ ଦେଖିବା ବନ୍ଦ ଥିଲା । ତେଣୁ ମୁନ୍ନାଜାନ ନବାବଙ୍କର ପୁଅ ବୋଲି କହିହେବ ନାହିଁ । ଆଉ କୈସ୍ବାନ ? ତାହାର କାହାଣୀ ସମସ୍ତେ ଜାଣନ୍ତି ।

୧୮୩୭ ମସିହା ଜୁଲାଇ ସାତ ତାରିଖରେ ନାସିରଉଦ୍ଦୀନ୍ ମରିଗଲେ । ସେ ବଡ଼ ସନ୍ଦେହୀ ଲୋକ ଥିଲେ । ତାଙ୍କ ପାଖରେ ଜଣେ ୟୁରୋପୀୟ ବୃଦ୍ଧ ବର୍ଷସାଏ ଥିଲେ । ସେ ନବାବଙ୍କର ଖାଦ୍ୟ ପରୀକ୍ଷା କରୁଥିଲେ । ସେ ଚାଲିଯିବା ପରେ ବିଷର ଭୟ ତାହାଙ୍କୁ ବେଶୀ ଘାରିଥିଲା । ଦୁଇଜଣ ଭଉଣୀଙ୍କ ବ୍ୟତୀତ ସେ ଆଉ କାହାକୁ ବିଶ୍ବାସ କରୁ ନ ଥିଲେ । ନବାବଙ୍କୁ ସେମାନେ ରାତିର ଅନ୍ଧକାର ମଧ୍ୟରେ ପ୍ରାସାଦର ଗୋଟିଏ କୂଅରୁ ପାଣି ଆଣି ଦେଉଥିଲେ । ଶୋଇବା ଘରର ଗୋଟିଏ ଆଲମାରୀ ଭିତରେ ପାଣି ମାଠିଆକୁ ନବାବ ତାଲାବନ୍ଦ କରି ରଖୁଥିଲେ । ତାଙ୍କ ବେକରେ ସେହି ତାଲାର ଚାବି ଝୁଲୁଥିଲା । ପ୍ରଚାର ହେଇଗଲା ଯେ ସେହି ଦୁଇ ଭଉଣୀ ନବାବଙ୍କୁ ବିଷ ଖୁଆଇ ହତ୍ୟା କରିଛନ୍ତି । ରେସିଡେଣ୍ଟ ସାହେବଙ୍କ ପାଖରେ ଏହି ଖବର ସେତେ ଗୁରୁତ୍ୱପୂର୍ଣ୍ଣ ନ ଥିଲା । ତାଠାରୁ ଜରୁରୀ ବିଷୟ ଥିଲା ନାସିରଉଦ୍ଦୀନ୍ ମୃତ ।

ରାତି ଶେଷ ହେବାପୂର୍ବରୁ ସମଗ୍ର ଭାରତକୁ ଜଣାଇଦେବାକୁ ହେବ— ଲକ୍ଷ୍ନୌର ନବାବ କିଏ । ନାସିରଉଦ୍ଦୀନ ରାତି ସାତଟାବେଳେ ଶେଷନିଃଶ୍ବାସ ତ୍ୟାଗ କରିଥିଲେ । ତେଣୁ ସମୟ ଅତି ସମାନ୍ୟ ଥିଲା । ତେଣୁ ଦୁଲହୀ ଇଚ୍ଛାକଲା କୈସ୍ବାନ୍‌କୁ ସେ ସିଂହାସନରେ ବସାଇବ ।

ତେଣେ ହାରେମ୍‌ର ଅନ୍ୟ ମହଲରେ ବ୍ୟାପକ ପ୍ରସ୍ତୁତି ଚାଲିଥାଏ । ମୃତ ନବାବଙ୍କର ମାଆ ପାଦଶାହୀ ବେଗମ୍ ମୁନ୍ନାଜାନର ପକ୍ଷ ନେଇଥିଲେ । ସେ ମଧ୍ୟ ନିଜ ଫଉଜରେ ବନ୍ଧପରିକର । ପ୍ରାସାଦରେ ଓ ସହରରେ ପ୍ରବଳ ଉତ୍ତେଜନା । ମାରପିଟ ହୋଇଯିବାର ଉପକ୍ରମ । ରେସିଡେଣ୍ଟ ତଥା ଇଂରେଜମାନେ ପୂର୍ବରୁ ମନ ସ୍ଥିର କରି ରଖିଥିଲେ । କୈସ୍ବାନ୍‌ର ଦାବୀକୁ ସେମାନେ ବହୁକାଳ ପୂର୍ବରୁ ନାକଚ କରିଦେଇଥିଲେ । ସେମାନଙ୍କର ସିଦ୍ଧାନ୍ତ ଯେ ନବାବ ହେବେ ମୃତ ସୁଲତାନଙ୍କର ଜଣେ ଆତ୍ମୀୟ ନସିରଉଦ୍ଦୌଲା । ମୁନ୍ନାଜାନର ଦାବୀ ମଧ୍ୟ ନାକଚ ହୋଇଯାଇଥାଏ । ଗୋପନରେ ତାଙ୍କର ଅଭିଷେକ ହେଲା । ନସିରଉଦ୍ଦୌଲା ସିଂହାସନରେ ବସିଲେ । ତାଙ୍କର ଦରବାରୀ ନାମ ହେଲ—ମହମ୍ମଦ ଆଲ୍ଲୀ ଶାହ । କୈସ୍ବାନ୍ ହାରିଗଲା । ହାରିଗଲା ଦୁଲହୀ । ହାରେମ୍‌ରେ ସବୁ ସ୍ୱପ୍ନ ସଫଳ ହୁଏ ନାହିଁ ।

ହାରେମ୍‌ର ଆଉ ଜଣେ ମହୀୟସୀଙ୍କର କଥା ନ କହିଲେ ହାରେମ୍‌ର ଇତିହାସ ସତେ ଯେପରି ଅସମ୍ପୂର୍ଣ୍ଣ ରହିଯିବ ।

ଆଗ୍ରା ସହରରେ ସେତେବେଳେ ରାତି ଅଧ । ନଶା ଗର୍ଜୁଥାଏ । ଚାରିଆଡ଼ ଜହ୍ନଆଲୁଅରେ ପ୍ଲାବିତ ।

ଠିକ୍ ଏତିକବେଳେ ଜନହୀନ, ନିସ୍ତବ୍ଧ ରାଜପଥରେ ଗୋଟିଏ ସ୍ତ୍ରୀମୂର୍ତ୍ତି ଦେଖାଗଲା । ଜହ୍ନଆଲୁଅ, ତାହାର ମଣିମୁକ୍ତାଖଚିତ ବହୁମୂଲ୍ୟ ବୋରଖାଉପରେ ଉଛୁଳିଉଠୁଥିଲା । ଗୋଟିଏ ପୁରୁଣା ଅଶ୍ୱତ୍ଥ ଗଛମୂଳରେ ଆସି ଠିଆହେଲା । ଜହ୍ନଆଲୁଅରେ ଛଳଛଳ ଯାଉଥିବା ଯମୁନାର ପାଣିକୁ କିଛି ସମୟ ଅନାଇଲା । ତାହାପରେ ହଠାତ୍ ଚାରିଆଡ଼ର ଗାଢ଼ ନିସ୍ତବ୍ଧତାକୁ ବିଦୀର୍ଣ୍ଣ କରି ସଙ୍କେତସୂଚକ ବଂଶୀ ବଜାଇଥିଲା । ସଙ୍ଗେ ସଙ୍ଗେ କେଉଁ ଅଲକ୍ଷ୍ୟ ଦିଗନ୍ତରୁ ଜଣେ ଅଶ୍ୱାରୋହୀ ଦଉଡ଼ି ଆସିଥିଲା ।

ରମଣୀର କଣ୍ଠସ୍ୱର ଉତ୍ତେଜନାରେ କମ୍ପି ଉଠିଥିଲା—ଆଦାବ ଅଲ୍ଲୀ ମନସୁର୍ ! ଚାଲନ୍ତୁ, ବର୍ତ୍ତମାନ ଯିବାକୁ ହେବ ।

ହାରେମ୍‌ର ଘାଟରେ ଆସି ଡଙ୍ଗା ଲାଗିଲା । କିନ୍ତୁ ଘାଟରେ ଡଙ୍ଗା ଲାଗିଲା ମାତ୍ରେ ସେହି ରମଣୀ କାନ୍ଦିଉଠିଥିଲା । ଏ କଣ ? କାନ୍ଦୁଛ କାହିଁକି ବେଗମ୍ ? ବିସ୍ମିତ ହୋଇଗଲେ ମନସବଦାର ମନସୁର ଅଲ୍ଲୀ । ସେ କହିଲେ—ତୁମପରି ସୁନ୍ଦରୀ ଆଖିରେ ଲୁହ ?

ବେଗମ୍ କହିଲେ—ଆପଣ ଯଦି ମୋତେ ପ୍ରକୃତରେ ଭଲପାଆନ୍ତି; ତେବେ ·········ପାରିବେ ପ୍ରତିଶୋଧ ନେଇ ? ଆପଣ ବୀର । ଆପଣ ସୁଲତାନ ମୋରାଦଙ୍କର ଘନିଷ୍ଠ ପାର୍ଶ୍ୱଚର ।

—ହଁ ପାରିବ ।

—ତେବେ ଆସନ୍ତୁ ।

ଅତି ଦ୍ରୁତ ଗତିରେ ସିଡ଼ି ଦେଇ ଉପରକୁ ଉଠିଆସିଲ୍ ସେଉନା । ହାରେମ୍‌ର ମସ୍‌ଜିଦ୍‌କୁ ଆସି, ତାହା ପାଖରେ ଥିବା ଗୋଟିଏ ଗ୍ରେରିକୋଠରୀ ଭିତରକୁ ପଶିଯାଇ ଦୁଆର ବନ୍ଦ କରିଦେଲ ।

ମହମବତିର ସ୍ୱଳ୍ପ ଆଲୁଅ ଭିତରେ ସିଡ଼ିଦେଇ ତଳକୁ ଓହ୍ଲାଇଆସିବା ପରେ ଉଜ୍ଜ୍ୱଳ ଆଲୋକରେ ସେମାନଙ୍କର ଆଖି ଝଲସିଉଠିଲା ।

ଉଜ୍ଜ୍ୱଳ ଆଲୋକରେ ଗୋଟିଏ କକ୍ଷ ଅତି ଦାମୀ ଆସବାବରେ ସଜ୍ଜିତ । କେଜାଣି ଅମୀରଙ୍କର ଗୋପନ ପ୍ରମୋଦକକ୍ଷ ବୋଲି ମନେ ହେଲା । ତାହାପରେ ପଡ଼ିଲା ଆଉ ଗୋଟିଏ ସାନ ଘର ।

ସେଠାରେ ଉଜ୍ଜ୍ୱଳ ଆଲୁଅ ନ ଥିଲା । କିନ୍ତୁ ନୀଳାଭ ଆଲୁଅରେ ସବୁଆଡ଼ କିପରି ସ୍ୱପ୍ନରାଜ୍ୟପରି ମନେ ହେଉଥିଲା । ଦୀପଦାନୀଉପରେ ସୁଗନ୍ଧ ତେଲର ପ୍ରଦୀପ ଜଳୁଥିଲା । ଆଉ ସେହି ଆଲୁଅରେ ଗୋଟିଏ ମର୍ମାନ୍ତିକ ଦୃଶ୍ୟ ଦେଖି ଚମକିଉଠିଲେ ମନସୁର ଅଲ୍ଲୀ ।

ପଲଙ୍କ ଉପରେ ଜଣେ ଅପୂର୍ବସୁନ୍ଦରୀ ରମଣୀର ମୃତଦେହ । ମନେହୁଏ, ସତେ ଯେପରି ପରମ ପ୍ରଶାନ୍ତିରେ ଶୋଇଛି । ତା'ର କମନୀୟ ମୁହଁଉପରେ ମୃତ୍ୟୁ ଟିକିଏହେଲେ ଯନ୍ତ୍ରଣାର ଚିହ୍ନ ଆଙ୍କି ନ ଥିଲା ।

—ଇଏ କିଏ ? ତୁମେ ମୋତେ କେଉଁଠାକୁ ନେଇଆସିଲ ?

—ଇଏ ମୋର ପ୍ରାଣଠାରୁ ବଳି ଭଉଣୀ ଆମିନା ବେଗମ୍ । ଦେଖନ୍ତୁ ଆଲ୍ଲୀ ସାହେବ, ଏବେ ମଧ୍ୟ ତାହାର ଦୁଇ ଆଖିରେ ସ୍ୱପ୍ନ ଲାଗିରହିଛି ।

—କେଉଁ ସ୍ୱପ୍ନ ?

—କେଉଁ ସ୍ୱପ୍ନ ! ଶାହାଜାଦୀର ବେଗମ୍ ହେବାର ସ୍ୱପ୍ନ । ଆପଣଙ୍କର ମାଲିକ ସୁଲତାନ ମୋରାଦଙ୍କର ପାଟରାଣୀ ହେବାର ସ୍ୱପ୍ନ । ହିନ୍ଦୁସ୍ଥାନର ଭବିଷ୍ୟତ ସାମ୍ରାଜ୍ଞୀ ହେବାର ସ୍ୱପ୍ନ ।

ମନସୁରଙ୍କ ଆଖିରେ ବିସ୍ମୟ ଯେପରି ଛଟପଟ ହେବାକୁ ଲାଗିଲା ।

ସେମାନେ ହେଲେ ଦୁଇ ଭଉଣୀ । ଜାତିରେ ଆରମେନିୟାନ୍ । ପିଲାଦିନେ ବାପାମାଆଙ୍କର ମୃତ୍ୟୁ ହୋଇଥିଲା । ତାହାପରେ ନାନାସ୍ଥାନରେ ବହୁତ ଲୋକଙ୍କଠାରୁ ହାତବଦଳ ହୋଇ ହୋଇ ଆସିଥିଲେ ସମ୍ରାଟ ଶାଜାହାନଙ୍କର ପ୍ରଧାନ ଜହୁରୀ ମଜବର ସାହେବଙ୍କ ଅନ୍ଦରମହଲକୁ । ମଜବର ସାହେବ ଥିଲେ ବୃଦ୍ଧ, ବିପତ୍ନୀକ, ଉଦାରହୃଦୟ, ସୌମ୍ୟ ପ୍ରକୃତି । ତାଙ୍କ ପାଖରେ ଦୁଇ ଭଉଣୀ ଝିଅପରି ବଢ଼ିବାକୁ ଲାଗିଲେ ।

ଦିନପରେ ମାସ, ମାସପରେ ବହୁବର୍ଷ ବିତିଯାଇଥିଲା । ଦୁଇ ଭଉଣୀଙ୍କର ଦେହରେ ଯୌବନର ବନ୍ୟା ମାଡ଼ିଆସିଥିଲା । ବିଶେଷତଃ, ଆମିନାର ରୂପଯୌବନର ତୁଳନା ନ ଥିଲା ।

ମଜବରଙ୍କ ଘରେ ଆମନ୍ତ୍ରିତ ରାଜକୁମାର ମୋରାଦଙ୍କର ନଜରରେ ପଡ଼ିଗଲା ଆମିନା । ସେଇ ନଜର ହେଲା ତାହାର କାଳ । ମଜବରଙ୍କର ଅନ୍ତଃସ୍ଥରୁ ତାହାକୁ ନେଇ ଶାହାମଞ୍ଜିଲରେ ରଖିଲେ ମୋରାଦ । କହିଥିଲେ—ତୁମକୁ ବେଗମ୍ କରିବ ଆମିନା ।

ନେଜାମତ ଖାଁ ନାମକ ଜଣେ ସେନାପତିଙ୍କୁ ଆମିନାର ତଦାରଖର ଭାର ଦେଇ ମୋରାଦ ଚାଲିଗଲେ ଗୁଜୁରାଟ । ଦିନେ ରାତିରେ ଘୁମନ୍ତ, ଆମିନାର ଘର ଆଗରେ ଆସି ଠିଆହେଲା ନେଜାମତ । ଆମିନାର ରୂପ ତାହାକୁ ପାଗଳ କରିଦେଇଥିଲା । କାମନାର ନିଆଁରେ ଜଳିପୋଡ଼ିଯାଉଥିଲା ତାହାର ଦେହ । ନିଦାରୁଣ ତୃଷ୍ଣାରେ ଯେପରି ଜିଭତାଳୁ ଶୁଖି କାଠ ହୋଇଯାଉଥିଲା । ଆଖିଆଗରେ ପାଣିରେ ପରିପୂର୍ଣ୍ଣ ସରୋବର ନିଥର-ନିସ୍ପନ୍ଦ ହୋଇପଡ଼ିରହିଛି । ଆଉ ଏଥିରେ ସେ ଲମ୍ଫ ଦେବେ ନାହିଁ ?

ସଇତାନ ନେଜାମତର ଉନ୍ମତ୍ତ ଆଲିଙ୍ଗନ ଯୋଗୁ ଆମିନାର ନିଦ ଭାଙ୍ଗିଗଲା ।

ଏହାପରେ ଘଟଣା ଅତି ସଂକ୍ଷିପ୍ତ । ଗୁଜୁରାଟରୁ ବାଦଶାହୀ-ମୋହର-ଅଙ୍କିତ ଗୋଟିଏ ଜରୁରୀ ଚିଠି ପାଇଲା ଆମିନା ।

—ଆମିନା, ତୁମକୁ ମୋର ହୃଦୟ-ମନ୍ଦିରରେ ଦେବୀ କରିଥିଲି । ତୁମକୁ ନେଇ କେତେ ସ୍ୱପ୍ନ ଦେଖିଥିଲି । କିନ୍ତୁ, ତୁମର ରୁଚି ଏତେ ଜଘନ୍ୟ ? ତୁମେ ମୋର ବାଗ୍‌ଦତ୍ତା ହୋଇ ତୁମର ପୂର୍ବର କୌଣସି ପ୍ରଣୟୀ ପାଖରେ ଦେହ ଦାନ କରିଛ ? ତୁମେ ଏହି ପତ୍ର ପାଇବାର ତିନିଦିନ ପରେ ତୁମର ଛିନ୍ନମସ୍ତକକୁ ମୋ ପାଖକୁ ଭେଟି ପଠାଇବ ମୋର ଏକାନ୍ତ ବିଶ୍ୱସ୍ତ କର୍ମଚାରୀ ନେଜାମତ ହାତରେ । ଜାଣିରଖ, ବାଦଶାହୀ ପରୁଆନା କେବେ ହେଲେ ଏପାଖ ସେପାଖ ହୁଏ ନାହିଁ । ଇତି—ମୋରାଦ ।

କାଗଜରେ ଲେଖାଥିଲା…… ‥ଗୁଜରାଟ ……‥କେଉଁଠାରେ…… । ତୁମେ ତୁମର କର୍ମଚାରୀ ସଇତାନ ନେଜାମତର କଥାରେ ବିଶ୍ୱାସ କରି ଏପରି ପରୁଆନା ଜାରୀ କରିଲ ? ଦିନେ ଯେତେବେଳେ ବୁଝିପାରିବ ତୁମର ସେରିନା ଏକାନ୍ତ ତୁମର ଥିଲା, ସେତେବେଳେ ତୁମର ଆଖିରୁ ଅଜସ୍ର ଲୁହ ଝରିବ ……… ହାୟ ଖୋଦା……… ହାୟ ଆଲ୍ଲା……… ।

ହତଭାଗୀ ବିଷ ପିଇ ଆତ୍ମହତ୍ୟା କରିଥିଲା । ସେ ଅନେକ କିଛି ଭାବିଥିଲା । କିନ୍ତୁ; ଥରେ ଭାବିପାରି ନ ଥିଲା ସଇତାନ ନେଜାମତ, ସୁଲତାନଙ୍କ ହାତଲେଖାକୁ ଜାଲ କରିପାରେ ବୋଲି । ଜାଲ କରିପାରିବ ବାଦଶାହୀ ସିଲମୋହର ।

ଆହୁରି ମଧ୍ୟ ଦେଖାଯାଏ, ଏହି ହାରେମ୍‌ରେ ବସି ବାବରଙ୍କର ବିଦୁଷୀ କନ୍ୟା କବିତା ରଚନା କରିଥିଲେ—

"ହର ମନ୍ନିକେ ଉ-ବାଆଶିକ-ଇ ଖୁଦ୍ ଇସ୍ତାର ନିସ୍ତ

ଗୁ ଇସ୍ତାକିନ ମିଦାନ୍ କେ ହେଚ୍ ଆଜ ଉମରବର ଖୁରଦାର ନିସ୍ତ ।"

ଅର୍ଥାତ୍—ନିଜ ପ୍ରେମିକପ୍ରତି ବିମୁଖ ହେବ ପରି, ତୁମେ ଜାଣିବ ଯେ କେହି ଜୀବନକୁ ପୂର୍ଣ୍ଣଭାବରେ ଉପଭୋଗ କରିପାରେ ନାହିଁ । ଜୀବନ ନଶ୍ୱର; ଯାହା ପାଉଛ, ଉପଭୋଗ କରିନିଅ ।

ଏହି ଗୁଲବଦନ 'ହୁମାୟୁନନାମାର' ରଚୟିତା ।

ଗୁଲ୍‌ବଦନର କଥା ଲେଖିବସିଲେ ଆଉ ଜଣେ ହାରେମ୍‌ବାସିନୀ ମନସ୍ୱୀ ମହିଳାଙ୍କ କଥା ମନେ ପଡ଼ିଯାଏ । ତାଙ୍କ ନାମ ଜେବଉନ୍ନିସା । ମୋଗଲସମ୍ରାଟ ଆଉରଙ୍ଗଜେବଙ୍କ ଜ୍ୟେଷ୍ଠାକନ୍ୟା; ମାତ୍ର ଦଶବର୍ଷ ବୟସ ସମୟରେ କୋରାନକୁ ମୂଳରୁ ଶେଷଯାଏ ଆବୃତ୍ତି କରି ବାପାଙ୍କୁ ଚମକାଇଦେଇଥିଲେ । କିନ୍ତୁ, ଆଜି ବହୁ ଶତାବ୍ଦୀର ପଛରେ ରହି ମଧ୍ୟ କାନପାଖରେ ବାଜିଉଠେ ତାହାର କରୁଣ କବିତାର ବେଦନାପୂର୍ଣ୍ଣ କଥାଗୁଡ଼ିକ ।

"ବେଶେକନଦ୍ ଦସ୍ତେ କେ ଖମଦର ଗର୍ଦନ-ଇ ଇସ୍ତାରେ ନାଶୁଦ

କୁର ବା ଚଶମକେ ଲଜତ୍‌ଗୀର-ଇ ଦିଦାରେ ନାଶୁଦ ।"

ଏହି କଥାଗୁଡ଼ିକର ଅର୍ଥ ଜାଣିବାକୁ ହେବ ବାଦଶାହଙ୍କର ପ୍ରାଣାଧିକପ୍ରିୟ କନ୍ୟା ହେବା ସତ୍ତ୍ୱେ କେଉଁ କାରଣରୁ ତାଙ୍କର ବିରାଗଭାଜନ ହୋଇଥିଲେ ଏବଂ କାହିଁକି ଜୀବନର ଶ୍ରେଷ୍ଠ ଦିନଗୁଡ଼ିକ ତାହାକୁ ଜେଲଭିତରେ ବିତାଇବାକୁ ହୋଇଥିଲା ? ଏହି ରୁବାଇତର ଅର୍ଥ ହେଲା ସେହି ବାହୁ ( ଭଗ୍ନ ବ୍ୟତୀତ ଆଉ କିଛି ନୁହେଁ), ଯେଉଁବାହୁ ପ୍ରେମିକର କଣ୍ଠବେଷ୍ଟନ କେବେ ହେଲେ କରି ନାହିଁ । ଆଖିଥାଇ ମଧ୍ୟ ସେ ଅନ୍ଧ, ଯିଏ ( ପ୍ରେମାସ୍ପଦଙ୍କୁ ) ଦର୍ଶନର ରସ ଆସ୍ୱାଦନ କରେ ନାହିଁ ।

ଚିରରହସ୍ୟାବୃତ ଏହି ମୋଗଲ-ହାରେମ୍‌ର କଥା ଲେଖିବାବେଳେ କେହି ଥରେ ଭାବିନାହାନ୍ତି ଏହି ମନସ୍ୱୀ ହାରେମ୍ ରମଣୀମାନଙ୍କ କଥା । କେହି ମଧ୍ୟ ଭାବନ୍ତି ନାହିଁ, ହାରେମ୍‌ବାସିନୀ ସୁନ୍ଦରୀ ମମତାଜଙ୍କର କେତେ ପ୍ରଭାବ ଥିଲା ଶାଜାହାନଙ୍କର ସୁଶାସନର ଅନ୍ତରାଳରେ ? କିନ୍ତୁ ଲେଖା ହୁଏ କେବଳ ସେହି ହାରେମ୍‌ର ଲୋମହର୍ଷକ ବ୍ୟଭିଚାରର କାହାଣୀ— ଯୌନଲୀଳାର ମୁଖରୋଚକ ଗଳ୍ପ । କେହି ମନେ କରନ୍ତି ନାହିଁ, ହାରେମ୍‌ର ସବୁ ବେଗମ୍‌ମାନେ ଗୁଲବଦନ କିମ୍ବା

ଦେବ ଉଦ୍ଦିନ୍ ସାପର ମନପ୍ରାଣ ଦେଇ ସାହିତ୍ୟ ଚର୍ଚ୍ଚା କରୁଥିଲେ । ମମତାଜ କମ୍ବା ଯୋଧପୁରୀ ବେଗମ୍‌ଙ୍କ ପର ରାଜ୍ୟର ସୁଶାସନପାଇଁ ମୁଣ୍ଡଖର୍ଚ୍ଚ କରିବାକୁ ହେଉଥିଲା ।

ନା, ତାହା ହୋଇପାରେନା । ହେବ କପରି ? ଜାହାଙ୍ଗୀର, ତାଙ୍କର 'ତାରିଖ-ଇ-ଜାହାଙ୍ଗୀରନାମା'ରେ ନିଜେ କହିଛନ୍ତି—ଜଣେ ନୁରଜାହାନଙ୍କ ଦେହରେ ଶୋଭା ପାଉଥିଲା ସାତ ଲକ୍ଷ ଟଙ୍କାର ଅଳଙ୍କାର । ଉଦୀପୁରୀ ବେଗମଙ୍କର ମାସିକ ହାତଖର୍ଚ୍ଚ ଥିଲା କେତେ ଲକ୍ଷ ଟଙ୍କା । ଯେଉଁଠାରେ ରଙ୍ଗିନ ସେଗ୍‌ଲ ଓ ବିପୁଳ ଐଶ୍ୱର୍ଯ୍ୟର ଅନ୍ତହୀନ ପ୍ରାଚୁର୍ଯ୍ୟ—ସେଠାରେ ଶୁଦ୍ଧ, ପବିତ୍ର ଓ ଶାନ୍ତ ଜୀବନ ଯାପନ କରିବା କଠିନ ।

ତେଣୁ ଅତ୍ୟନ୍ତ ସ୍ୱାଭାବିକଭାବରେ ଯୌବନବତୀ ବେଗମମାନେ ପ୍ରେମରେ ପଡ଼ୁଥିଲେ । ବ୍ୟର୍ଥ ପ୍ରତିହିଂସା-ଜ୍ୱାଳାରେ ଜଳିଉଠୁଥିଲେ; କମ୍ବା ବିଫଳ ପ୍ରେମିକର ଶାଣିତ ଛୁରିଦ୍ୱାରା ପ୍ରାଣ ହରାଉଥିଲେ ।

ଏହି ସୁନ୍ଦରୀ ରମଣୀମାନଙ୍କୁ ହାରେମରେ ଜଗିବାପାଇଁ ଖୋଜାମାନଙ୍କୁ ନିଯୁକ୍ତ କରାଯାଉଥିଲା । ଏହି 'ଖୋଜା' ଶବ୍ଦ ହେଲା ଫାରସୀ ଶବ୍ଦ । ଏହାର ଅର୍ଥ ଖାସୀ କରାଯାଇଥିବା ମଣିଷ । ସେମାନଙ୍କୁ ରାଜ-ଅନ୍ତଃପୁରରେ ନିଯୁକ୍ତ କରାଯାଉ ଥିଲା, କାରଣ ସେମାନେ ସ୍ତ୍ରୀଲୋକମାନଙ୍କର କୌଣସି କ୍ଷତି କରିପାରୁ ନ ଥିଲେ । ସେମାନଙ୍କର କ୍ଷତି କରିବାର ଶକ୍ତି ନ ଥିଲା । ଏମାନଙ୍କୁ ଏନ୍‌ସାଇକ୍ଲୋପିଡିଆ ବ୍ରିଟାନିକା କୁହେ—ପୁରୁଷତ୍ୱହୀନ ମଣିଷ ।

ବିଶ୍ୱବିଖ୍ୟାତ ମନୀଷୀ ହେରୋଡୋଟାସ୍ କୁହନ୍ତି : ଖୋଜାମାନଙ୍କ ପରି ବିଶ୍ୱସ୍ତ ଓ ସତ୍ ଆଉ କେହି ହୋଇପାରିବେ ନାହିଁ । ଏହି କାରଣ ଯୋଗୁ ସେମାନଙ୍କୁ ଗୁରୁତ୍ୱପୂର୍ଣ୍ଣ କାମରେ ନିଯୁକ୍ତ କରାଯାଉଥିଲା । ଏହି ଖୋଜାମାନଙ୍କୁ ଆମଦାନୀ କରାହେଉଥିଲା କେଉଁଠାରୁ ? ଗବେଷକମାନେ କୁହନ୍ତି ମଧ୍ୟ-ଅଫ୍ରିକାର ଉତ୍ତର ପ୍ରାନ୍ତରେ ବାଜରମି ଜିଲ୍ଲାରେ ଖୋଜା-ବ୍ୟବସାୟର ପ୍ରଚଳନ ଥିଲା । ଏହି ସୁଦୂର ଦେଶରୁ ହଜାର ହଜାର ଟଙ୍କା ବିନିମୟରେ ଭାରତର ବାଦଶାହାମାନଙ୍କର ହାରେମ୍‌ପାଇଁ ଏହି ଖୋଜାମାନଙ୍କୁ ଅଣାଯାଉଥିଲା ।

ଖୋଜା—ବିଚିତ୍ର ଗୋଟିଏ ଶ୍ରେଣୀ ! ବିଚିତ୍ର ସେମାନଙ୍କର ଚାଲିଚଳନ । ଐତିହାସିକମାନେ କୁହନ୍ତି, ମେସୋପୋଟାମିଆ ଥିଲା ଖୋଜାମାନଙ୍କର ଆଦ୍ୟ ସ୍ଥାନ । ଏହିପରି ଗୋଟିଏ ଅଦ୍ଭୁତ କଥା ପ୍ରଥମେ ଯେ ଭାବିଥିଲେ ସେ ହେଉଛନ୍ତି ସେମିରାମିସ୍ । ଏହି ନାରୀ ଥିଲେ ଖ୍ରୀଷ୍ଟପୂର୍ବ ୮୧୧ଠାରୁ ୮୦୮ ଅବ୍ଦ ପର୍ଯ୍ୟନ୍ତ

ଆସିରୀୟାର ରାଣୀମାତା । ତାଙ୍କର ପ୍ରକୃତ ନାମ ହେଉଛି—ସାମୁରାମାତ । ଓଲ୍ଡ଼୍ ଟେଷ୍ଟାମେଣ୍ଟରେ ଏହି ଖୋଜାମାନଙ୍କ କଥା ଲେଖାଅଛି । ସେମାନେ ଧର୍ମୀୟ କାରଣଯୋଗୁ ପୁରୁଷତ୍ୱ ବିସର୍ଜନ ଦେଉଥିଲେ । ଧାର୍ମିକ ପୁରୁଷମାନଙ୍କ ମୁହଁରେ ଶୁଣାଯାଇଛି ଯେ "ସ୍ୱର୍ଗର ଦ୍ୱାର କେବଳ ଖୋଜାମାନଙ୍କ ପାଇଁ ଖୋଲା ।"

କହିବା ନିଷ୍ପ୍ରୟୋଜନ ଯେ ହାରେମ୍‌ର ଖୋଜାମାନେ ଈଶ୍ୱରଙ୍କ ନାମରେ ଉତ୍ସୃଷ୍ଟ ନୁହନ୍ତି । ସେମାନେ ଉଦ୍‌ବିଗ୍ନ ଲୋଭର ଶିକାର । ସେମାନେ ପ୍ରଥମେ ଆସିରୀୟାରୁ ପାରସ୍ୟକୁ ଆସନ୍ତି । ପାରସ୍ୟର ଲୋକମାନେ ହାରେମରେ ସେମାନଙ୍କୁ ପ୍ରଥମେ ପ୍ରହରୀଭାବରେ ନିଯୁକ୍ତ କରିଥିଲେ । ତାହାପରେ ଗ୍ରୀସ୍; ଗ୍ରୀସ୍ ପରେ ରୋମ । ଖୋଜାମାନେ ରୋମରେ ସୁପରିଚିତ ।

ଖୋଜାମାନେ ହାରେମର ରକ୍ଷକ । ସେହିମାନେ ବେଗମମାନଙ୍କର ସ୍ନାନସହଚର, ବିନ୍ତରକ, ଘାତକ, ଆନନ୍ଦର କାରଣ ଓ କୌତୁକର ଉପଲକ୍ଷ୍ୟ । ଏହି ଖୋଜାମାନଙ୍କ ମଧ୍ୟରେ ଯେଉଁମାନେ ଶ୍ୱେତାଙ୍ଗ, ତୁରସ୍କରେ ସେମାନଙ୍କ ନାମ ଥିଲା 'କାପୁଆଗାସି' । ଦ୍ୱାରରକ୍ଷକ ଭାବରେ ଚୂଡ଼ାନ୍ତ ଦାୟିତ୍ୱ ତାଙ୍କର । କୃଷ୍ଣାଙ୍ଗ ଖୋଜାମାନଙ୍କର ନାମ ଥିଲା 'କିସଲରଆଗାସି' ଅର୍ଥାତ୍ କୁମାରୀମାନଙ୍କର ରକ୍ଷକ । ଯେଉଁ ଖୋଜା ସୁଲତାନଙ୍କ ପାଖରେ ପ୍ରମୋଦକେନ୍ଦ୍ରରେ ପାର୍ଶ୍ୱଚର ହୋଇ ରହୁଥିଲା, ତାହାର ନାମ ଥିଲା—'ଦାରୁସ ସିସ୍ୱାଦେତ୍' । ଖୋଜାମାନଙ୍କର ସବୁଠାରୁ ବଡ଼ ସମ୍ପଦ ହେଲା ସେମାନଙ୍କର ହୃଦୟହୀନତା । ସେ ହେଉଛି ବିଶ୍ୱର ସବୁଠାରୁ କ୍ରୂର, ଷଡ଼ଯନ୍ତ୍ରକାରୀ, ନିଷ୍ଠୁର ସେନାପତି ଓ ନିର୍ମମ ଘାତକ । ସେମାନଙ୍କ ଭାଗ୍ୟରେ ପ୍ରଶଂସା ମଧ୍ୟ ଜୁଟିଥିଲା । ଖୋଜାମାନଙ୍କ ଜୀବନର ଶକ୍ତତାକୁ ତଥାପି ଆଢ଼ୁଆଳରେ ରଖାଯାଇ ନାହିଁ । ହାରେମରେ ଯଦି କାନ୍ଦ ଓ ହାହାକାର ଇତିହାସ ହୁଏ, ତେବେ ଖୋଜାମାନେ ସେଠାରେ ସବୁଠାରୁ ତୀବ୍ର ଆର୍ତ୍ତନାଦ । ୧୮୩୭ ମସିହାରେ ମୁର୍ଶିଦାବାଦର ପ୍ରାସାଦରେ ଅନୁସନ୍ଧାନ କରି ଜଣାଯାଇଥିଲା, ସେଠାରେ ମାତ୍ର ତେଷଠି ଜଣ ଖୋଜା ଅଛନ୍ତି । ୧୮୨୭-୩୭ ମସିହାରେ ନାସିରଉଦ୍ଦୀନଙ୍କ ଅମଳରେ ଲକ୍ଷ୍ନୌର ବେଗମ-ମହଲରେ ମାତ୍ର ଏକଶହ ପଚିଶ ଜଣ ଖୋଜା ଥିଲେ । ୧୯୫୭ ମସିହାରେ କ୍ୟାଣ୍ଡନାଲ ଲଭଗେଭ ମରକ୍‌କୋରୁ ଜଣାଇଥିଲେ, ସୁଲତାନଙ୍କର ପ୍ରାସାଦପାଇଁ ଏବେ ତିରିଶ ଜଣ ଶିଶୁଙ୍କୁ ଡାକ୍ତରଖାନାରେ ଅସ୍ତ୍ରୋପଚାର କରାଯାଇଥିଲା । ସେମାନେ କିନ୍ତୁ କେହି ବଞ୍ଚି ନାହାନ୍ତି । ଇଂରେଜର ଜଣେ ଟକେସ୍ତକ ଜଣାଇଥିଲେ ସୌଦିଆରବର ସହକାରୀ ଡାକ୍ତରଖାନାରେ ଯେଉଁ କୋଡ଼ିଏ ଜଣ ଶିଶୁଙ୍କୁ ଅସ୍ତ୍ରୋପଚାର କରାଯାଇଥିଲା, ସେମାନଙ୍କ ମଧ୍ୟରୁ ମାତ୍ର ଦୁଇ ଜଣ ବଞ୍ଚିଛନ୍ତି । କିନ୍ତୁ ପୂର୍ବକାଳରେ ଆରବରେ ଡାକ୍ତରଖାନା ନ ଥିଲା ।

ଆବସିନିଆରେ ଜାଦୁକର ଓ ପୁରୋହିତ ବ୍ୟତୀତ ଚିକିତ୍ସକ ନ ଥିଲେ । ସେତେବେଳେ ଡାରଫୋର୍ କଲର ଓ ଆଉସ ସହର ଖୋଜାତିଆରି କାରଖାନା ଭାବରେ ପ୍ରସିଦ୍ଧିଲାଭ କରିଥିଲା । ପ୍ରତିବର୍ଷ ଛଅହଜାର ଖୋଜା ସରବରାହ କରିବା ପାଇଁ ଏହି ସହରରେ ଅଠର ହଜାର ପୁରୁଷ ପ୍ରାଣ ବଳି ଦେଉଥିଲେ ।

କିନ୍ତୁ ଯୌନକ୍ଷମତାଲୁପ୍ତ ହେଲେ ମଧ୍ୟ ମନଭିତରେ ଯେଉଁ କାମନାର ଅଗ୍ନି ଜଳୁଥିଲା ତାକୁ ଲିଭାଇବେ ସେମାନେ କିପରି ? ହାରେମରେ ଏହି ଖୋଜା ମାନଙ୍କର ବହୁତ ପ୍ରେମର କାହାଣୀ ଲିପିବଦ୍ଧ ଅଛି ।

ଆକବରଙ୍କ ସମୟର ଗୋଟିଏ ଘଟଣା ।

ଆଗ୍ରା ସହରରେ ଗୋଟିଏ ସିନ୍ଦୁକ ଭିତରୁ ସମ୍ରାଟ୍‌ଙ୍କର ଇରାନୀ ମହିଷୀଙ୍କର ଦାସୀ ଲତିଫାର ମୃତଦେହ ମିଳିଲା । ତାର ଛାତିରେ ତୀକ୍ଷ୍ଣ ଛୁରି ଭୁସିହୋଇ ଥାଏ । ଆଉ ସେହି ଛୁରି ଦେହରେ ଖଣ୍ଡିଏ ସୂତାରେ କାଗଜ ଖଣ୍ଡିଏ ବନ୍ଧା ଯାଇଥିଲା । ସେହି କାଗଜରେ ଲେଖା ହୋଇଥିଲା—ମୃତ ତରୁଣୀର ରକ୍ତରେ ଏହି ଚିଠି ଲେଖୁଛି । ମୁଁ ଜଣେ ହତଭାଗ୍ୟ ଖୋଜା । ଖୋଜା ହେଲେ ମଧ୍ୟ ଆମେ ମଣିଷ । ମଣିଷପରି ଆମର କ୍ଷୁଧା, ତୃଷ୍ଣା, କାମନା-ବାସନା ସବୁ କିଛି ଅଛି । ମୁଁ ଲତିଫାକୁ ପ୍ରାଣରୁ ଅଧିକ ଭଲ ପାଉଥିଲି । ତାହାପାଇଁ ଏହି ଦୁନିଆରେ ମୋର ବଞ୍ଚିରହିବାର ଇଚ୍ଛା ଥିଲା । ମୁଁ ତାହାର ପ୍ରେମରେ ବୁଡ଼ିଯାଇଥିଲି । କିନ୍ତୁ ଦିନେ ଆବିଷ୍କାର କଲି, ନିଷ୍ଠୁର ପିଶାଚିନୀ ଲତିଫା ମୋତେ ଆଦୌ ଭଲ ପାଇ ନାହିଁ । କେବଳ ଏତେ ଦିନଯାଏ ଭଲ ପାଇବାର ଅଭିନୟ କରିଚାଲିଥିଲା । ସେତିକିବେଳେ ମୋର ଛାତିତଳେ ପ୍ରତିହିଂସାର ନିଆଁ ଜଳିଉଠିଲା । ମନେ ହେଲା, ଲତିଫା ଜାଣିପାରୁ, ଦୁନିଆର ସମସ୍ତେ ଜାଣିପାରନ୍ତୁ ଯେ ଖୋଜାମାନଙ୍କର ପ୍ରତିହିଂସା କିପରି ଭୟାନକ । ଖୋଜାମାନେ ଆଉ କିଛି ନ ପାରିଲେ ମଧ୍ୟ ଇହଲୀଳା ସାଙ୍ଗ କରିବାକୁ ଜାଣନ୍ତି । ଇତି—ହତଭାଗ୍ୟ ଜଣେ ଖୋଜା ।

ବୀରବଲ ସେତେବେଳେ ଆଗ୍ରାର ପ୍ରଧାନ ଶାସନକର୍ତ୍ତା । ମହଲର ସବୁ ଖୋଜାଙ୍କୁ ଗିରଫ କରି ଅଣାଗଲା । କଳା ଓ ଗୋରା ଖୋଜାଙ୍କୁ ଦୁଇଭାଗ କରି ଦିଆଗଲା । ଗୋଟିଏ ଉଚ୍ଚସ୍ଥାନରେ ଠିଆହୋଇ ଜାହାଙ୍ଗିର ଖାଁ ଘୋଷଣା କଲେ— ଯଦି ଭଲ ମନେ କରୁଛ ତେବେ ଦୋଷ ସ୍ୱୀକାର କର । ତୁମେମାନେ ଜାଣିଛ ସମ୍ରାଟ୍‌ଙ୍କ ରାଜ୍ୟରେ ନାରୀହନ୍ତାର ଶାସ୍ତି କିପରି ଭୟାନକ ?

—ହଁ, ଆମେ ଜାଣିଛୁ । ପିଞ୍ଜରା ଭିତରେ ଭର୍ତ୍ତି କରି ନାଗସାପ ଛାଡ଼ି ଦିଆଯାଏ ।

—ତେବେ କୁହ ? ଏହି ଦାସୀକୁ ହତ୍ୟା କରିବାପାଇଁ ଯଦି ଯୁକ୍ତିସଙ୍ଗତ କାରଣ ଥିବ ତେବେ ଅପରାଧୀକୁ ବେକସୁର ଖଲାସ କରିଦିଆଯିବ ।

ଖୋଜାମାନେ ସମସ୍ତେ ମୁଣ୍ଡ ତଳକୁ କରି ଠିଆହୋଇ ରହିଲେ । କେହି କୌଣସି କଥା କହିଲେ ନାହିଁ । କିନ୍ତୁ ସେମାନଙ୍କର ବିକୃତ, ସେମାନଙ୍କର ଅସ୍ୱାଭାବିକ ଜୀବନର ଅଭିଶାପ ସେମାନଙ୍କୁ କିପରି ହିଂସ୍ର କରିତୋଳୁଥିଲା, ଏ କଥା କେହି କଳ୍ପନା କରିପାରିବେ ନାହିଁ । ଆଦେଶ ହେଲା, ସମସ୍ତ ଖୋଜାଙ୍କୁ ମାଟିତଳ ଜେଲଖାନାରେ ବନ୍ଦକରିଦିଅ ।

ଗଭୀର ଅନ୍ଧକାର କାରାଗାର । ଦିନ କିମ୍ବା ରାତି ତାହା ଭିତରେ ଜାଣିହୁଏ ନାହିଁ । କେହି କେହି ଖୋଜା ତାର ଭାଗ୍ୟକୁ ଅଭିଶାପ ଦିଏ । କେହି ମନ ଆନନ୍ଦରେ ଗୀତ ଗାଏ । କିନ୍ତୁ ସେମାନଙ୍କ ମଧ୍ୟରେ ଜଣେ ଖୋଜା ସର୍ବଦା ଚିନ୍ତିତ ଥାଏ । ଖଣ୍ଡିଏ ଖଡ଼ିମାଟିରେ ଜେଲଖାନାର କାନ୍ଥରେ ଦୁଇଟି ଆଖିର ଛବି ଆଙ୍କିଗଲେ । ଏଥର ଜାହାନ୍ଦର ଖାଁଙ୍କର ନଜର ପଡ଼ିଲା ହାରେମ୍ ଉପରେ । ହାରେମ୍‌ର ଖୋଜା-ମାନଙ୍କର ଖାତାରେ ଲେଖାଅଛି ତା'ର ଇତିହାସ ।

ଏହି ଖୋଜା ଦିନେ କାବୁଲର ଜଣେ ଖାନଦାନ ଘରର ପିଲା ଥିଲା । ମରୁଅଞ୍ଚଳର ଡକାୟତମାନେ ତାହାର ବାପାଙ୍କୁ ହତ୍ୟା କରି ତାକୁ ଖୋଜା କରିଦେଇ ହାରେମ୍‌ପାଇଁ ବିକ୍ରି କରିଦେଇଥିଲେ । ତାହାର ନାମ ଥିଲା କରିମ ଶେଖ ।

—କରିମ ଶେଖ, ତୁମେ ଲତିଫା ଦାସୀକୁ ହତ୍ୟା କରିଛ ?

ପିଠିରେ ଚାବୁକର ପ୍ରହାରରେ ସେ ଅଜ୍ଞାନ ହୋଇଯାଏ । ପକେଟରୁ ତା'ର ଖଣ୍ଡିଏ ମଇଳା ଚିରା ଖାତା ବାହାରିପଡ଼ିଥିଲା । ସେହି ଖାତାରେ ଲେଖାଥିଲା ଲତିଫାର ହତ୍ୟାରହସ୍ୟ । ଲତିଫାକୁ କରିମ ଅତି ଭଲ ପାଇଥିଲା । କିନ୍ତୁ ଦିନେ ରାତିରେ ଲତିଫା ପାଖକୁ ଆସି ନ ଥିଲା । ରାତି ଦୁଇଟା ବାଜିଗଲା । ମହଲର ହାରେମ୍‌ଖାନାରେ କାହାର କଥା ଧୀରେ ଧୀରେ ଶୁଣାଯାଉଛି ? ଆଫଗାନୀ ମହିଷୀ-ମାନଙ୍କର ଜମାଖାନାର ମଝିରେ ଗୋଟିଏ ସ୍ନାନ ପୋଖରୀ ଥାଏ । ହାରେମ୍‌ର ଦୁଆରର ଛିଦ୍ରଦେଇ ଦେଖିଲା କରିମ ଶେଖ । ପାଣିରେ ଶବ୍ଦ କରି କେଳି କରୁଛି ଲତିଫା, ଆଉ ପାଖରେ ଠିଆ ହୋଇଛନ୍ତି ଜଣେ ଲୋକ । ପାଣିରୁ ଉଠିଆସିଥିଲା ଲତିଫା । ନଗ୍ନ, ନିରାଭରଣ ଦେହ । ବକ୍ଷଦେଶ ଓ କ୍ଷୀଣକଟିରୁ ପାଣି ଝରିପଡ଼ୁଥାଏ । ଆଉ ହାରେମ୍‌ର ତହସିଲଦାର ସ୍ୱୟଂ ଇସ୍କନ୍ଦର ମିର୍ଜା ତାହାରି ଆଗରେ । ଲତିଫା

ନଗ୍ନଦେହରେ ଆସି ତାଙ୍କର ସାମନାରେ ଠିଆହେଲା । ପରମ ଆଦରରେ ନଗ୍ନ ଦେହକୁ ଟାଣି ନେଇଖଣ୍ଡିଏ ଗାଲିଚାରେ ଇସ୍କନ୍ଦର ମିର୍ଜା ଚୋବୁହବାକୁ ଲାଗିଲେ । ମୁଁ ଆଉ ଠିଆ ହୋଇପାରିଲି ନାହିଁ, ମୁଁ ଉନ୍ମାଦ ହୋଇଗଲି ଆଉ ସୁଯୋଗ ଖୋଜିବାକୁ ଲାଗିଲି । ଦିନେ ଲଢଫାକୁ ମୋ ଘରକୁ ଡାକିଆଣି ପଚାରିଲି—ତୁମେ ମୋତେ ଭଲପାଅ ଲଢଫା ?

—ଖୁବ୍ ଭଲପାଏ କଶମ ଶେଖ ! ତୁମେ କିପରି ପୁରୁଷ, ଯିଏ କି ନାରୀର ଭଲପାଇବା ବୁଝିପାରେ ନାହିଁ ?

ମୁଁ ଅଉ ସହି ନପାରି ଚିତ୍କାର କରି କହିଲି—ମୁଁ ତୁମର ଇସ୍କନ୍ଦର ମିର୍ଜା ନୁହେଁ ! ମୁଁ ପୁରୁଷ ନୁହେଁ, ମୁଁ ଜଣେ ଖୋଜା ! ତେଣୁ ତୁମେ ମୋତେ ନଚାଇଥିଲ ଶଇତାନୀ—ଏହା କହି ତା ପ୍ରାଢରେ ଛୁରୀ ଭୁଷିଦେଇଥିଲି ।

ଜାହାନ୍ଦର ଖାଁଙ୍କ ଆଖି ସଜଳ ହୋଇଉଠିଥିଲା । କଣ ବସ୍ତୁର ହୋଇଥିଲା ତାହା ଜଣାଯାଏ ନାହିଁ ।

ବର୍ନିୟାର ଆଉ ଗୋଟିଏ କରୁଣ କାହାଣୀ ଲେଖିଯାଇଛନ୍ତି । ଦିଦାର ଖାଁ ନାମରେ ଜଣେ ଖୋଜା ଜଣେ କରାମର. ଭଉଣୀକୁ ଭଲ ପାଇଥିଲା । ଏହି ଖବର ଜଣାପଡ଼ିଯିବାରୁ କରାମ ତାର ଭଉଣୀକୁ ଓ ଦିଦାର ଖାଁକୁ ସାବଧାନ କରାଇ ଦେଇଥିଲେ । କିନ୍ତୁ ଭଲପାଇବା କୌଣସି ବାଧା ମାନେ ନାହିଁ । ଦିନେ ହଠାତ୍ ସେହି କରାମ ଘରକୁ ଫେରି ଦେଖିଲେ ସେହି ଦୁଇଜଣ ଗୋଟିଏ ବିଛଣାରେ ଶୋଇଛନ୍ତି । ତେଣୁ ସେ ଗୋଟିଏ ଖଣ୍ଡା ନେଇ ଦୁହିଙ୍କର ମୁଣ୍ଡକୁ ହାଣିଦେଲେ । ଏ କରାମ ଜଣକ ହିନ୍ଦୁ । ଅଉରଙ୍ଗଜେବଙ୍କ ପାଖକୁ ତାଙ୍କୁ ଧରିନିଆଗଲା । ସେ ସବୁ ଶୁଣି କହିଲେ—ତୁମେ ଇସଲାମ ଧର୍ମ ଗ୍ରହଣ କଲେ କୌଣସି ଶାସ୍ତି ଦିଆଯିବ ନାହିଁ । ଅନେକେ ଦିଦାର ଖାଁ ହୁଏତ ପ୍ରାଣ ଦେଇଛନ୍ତି; କିନ୍ତୁ ପ୍ରତିଶୋଧ ନେଇଛନ୍ତି ଅନେକେ ।

ବର୍ନିୟାର ପୁଣି ଲେଖିଛନ୍ତି—ଶାହାଜାହାନଙ୍କ ନିଷ୍ଠୁର ହାତରେ ଜାହାନାରାର ପ୍ରେମିକଯୁଗଳଙ୍କର ହୃଦୟବିଦାରକ କାହାଣୀ । ନିଜ କନ୍ୟା ଆଗରେ ଗରମ ପାଣିରେ ତାର ପ୍ରେମିକକୁ ସିଝାଇ ମାରିଦେଇଥିଲେ । ପିତାଙ୍କ ଆଗମନ ବିଷୟ ହଠାତ୍ ଜାଣି ଜାହାନାରା ନିଜର ପ୍ରେମିକକୁ ଗୋଟିଏ ହାଣ୍ଡିଭିତରେ ଲୁଚାଇ ରଖିଦେଇଥିଲେ । ଶାହାଜାହାନ ଆଦେଶ ଦେଲେ, ଏହି ପାତ୍ରରେ ପାଣି ଗରମ କରି ତୁମର ସ୍ନାନ କରିବା ଉଚିତ । ତେଣୁ ପ୍ରେମିକ ପ୍ରାଣ ଦେଇଥିଲା । ଦ୍ୱିତୀୟ

ପ୍ରେମିକର ନାମ ଥିଲା ନଜର ଖାଁ । ଆଦର କରି ଶାହାଜାହାନ ତା ହାତରେ ଖଣ୍ଡିଏ ପାନ ଦେଇଥିଲେ । ପାନକୁ ମୁହଁରେ ପୁରାଇ ଆନନ୍ଦିତ ହୋଇ ନିଜ ସବାରି ଭିତରେ ସେ ଯାଇ ବସିଥିଲା । ଯେତେବେଳେ ନିଜ ଘରେ ପହଞ୍ଚିଲା, ସେତେବେଳକୁ ସେ ମୃତ ।

ଏହି କଥାକୁ ଐତିହାସିକମାନେ ଗୁଜବ ବୋଲି କହିଥିଲେ । ମାନୁସି ମଧ୍ୟ ଏହି କାହାଣୀ ସତ୍ୟ ନୁହେଁ ବୋଲି କହିଛନ୍ତି । କିନ୍ତୁ ହାରେମରେ ଏପ୍ରକାର ନିଷ୍ଠୁର ଘଟଣା ଯେ ଘଟୁଥିଲା ଏଥିରେ କୌଣସି ସନ୍ଦେହ ନାହିଁ ।

ହାରେମରେ ଅତରର ଆଦର ପରି ବିଷର ମଧ୍ୟ ପ୍ରଚଳନ ଥିଲା । ନୁରଜାହାନ ଅତର ଆବିଷ୍କାର କରିଥିଲେ । କିନ୍ତୁ ଆକବର ଅବିଷ୍କାର କରିଥିଲେ ବିଷ । ଶିକାର କରିବାକୁ ଯାଇ ସମ୍ରାଟ୍ ଗୋଟିଏ ସାପକୁ ମାରି, ସେହି ଶରରେ ଗୋଟିଏ ହରିଣକୁ ମାରିଥିଲେ । ହରିଣ ତତ୍‌କ୍ଷଣାତ୍ ମରିଯାଇଥିଲା । ପରୀକ୍ଷା କରି ଦେଖାଗଲା ହରିଣର ମାଂସ ଅତି ଶୀଘ୍ର ପଚିଯାଉଛି । ତେଣୁ ଆକବର ଏହାର କାରଣ କଣ ଜାଣିବାକୁ ଯାଇ ଶୁଣିଲେ ଯେ ସେହି ସାପଟି ଅତି ବିଷଧର ସାପ ଥିଲା । ଏହାର ନିଃଶ୍ୱାସରେ ମଧ୍ୟ ବିଷ ଥିଲା । ଆକବରଙ୍କ ଆଦେଶ ହେଲା ଏହି ସାପକୁ ପ୍ରାସାଦକୁ ନେଇଚାଲ । ତାପରେ ମାରାତ୍ମକ ବିଷ ତିଆରି ଚାଲିଲା । ମାନୁସି ଲେଖିଛନ୍ତି—ମୁସଲମାନମାନଙ୍କ ପ୍ରାସାଦରେ ବିଷକୁ ନେଇ ନାନାପ୍ରକାର ପରୀକ୍ଷା ହେଉଥିଲା । ବିଷର ମଧ୍ୟ ବ୍ୟାପକ ବ୍ୟବହାର ହେଉଥିଲା । ମୁଦି ତଳେ ବିଷ, ପାନରେ ବିଷ, ଅପ୍ରିୟ ଅମାତ୍ୟଙ୍କୁ ସମ୍ମାନ ଦେବାଛଳରେ ଯେତେବେଳେ ତାହାଙ୍କୁ ପଗଡ଼ି କିମ୍ବା ଚଦର ଉପହାର ଦିଆହେଉଥିଲା, ସେଥିରେ ମଧ୍ୟ ବିଷ ମାଖିଦିଆଯାଉଥିଲା । ମାନୁସି ଯେତେବେଳେ ଚିକିତ୍ସକ ହୋଇଥିଲେ, ସେତେବେଳେ ତାଙ୍କ ପାଖକୁ ବିଷପାଇଁ ବହୁତ ଲୋକ ଅନୁରୋଧ ନେଇ ଆସୁଥିଲେ । ନିଜର ସ୍ତ୍ରୀପାଇଁ ଲୋକମାନେ ବିଷପାଇଁ ଆସୁଥିଲେ । ସେ ଲେଖିଛନ୍ତି ମଇଜୁଦ୍ଦୀନ ବୋଲି ଜଣେ ସୁଲତାନ ନିଜ ହାତରେ ତାଙ୍କ ସ୍ତ୍ରୀକୁ ବିଷ ପ୍ରୟୋଗ କରିଥିଲେ । ବିଦେଶୀ ଚିକିତ୍ସକମାନଙ୍କର ଚେଷ୍ଟା ଯୋଗୁ ଲଗ ଲଗ ତିନଥର ଏହି ସ୍ତ୍ରୀଲୋକ ମୃତ୍ୟୁମୁଖରୁ ବଞ୍ଚିଯାଇଥିଲେ; କିନ୍ତୁ ଚତୁର୍ଥ ଥର ପାଇଁ ଆଉ ବଞ୍ଚିପାରି ନ ଥିଲେ ।

ନିଷ୍ଠୁରତାର ଅଦ୍ଭୁତ କେତେ କାହାଣୀ ଶୁଣିବାକୁ ମିଳେ । ନାଇଟନ ସାହେବଙ୍କ ଦାସୀ ଇଲୁଜାନ୍ ଅଯୋଧ୍ୟାର ନବାବ ଓୟାଜିଦ ଅଲି ସାହେବଙ୍କର ଜନନୀ ଆଉଲିଆ ବେଗମଙ୍କ ବିଷୟରେ ବହୁତ କଥା କହିଥିଲା । ତାଙ୍କର ନିପୁଣ କୁଟିଳ ହାତର ସ୍ପର୍ଶରେ ପ୍ରମତ୍ତ ରୂପସୀର ମୁହଁରୁ ସବୁ ଦିନପାଇଁ ସୌନ୍ଦର୍ଯ୍ୟ ଲିଭିଯାଇଥିଲା । ତାଙ୍କ ଅମଳରେ ଲକ୍ଷ୍ନୌର କୌଣସି ଗୋଟିଏ ପ୍ରାସାଦର କାନ୍ଥ ଭିତରେ ତିନିଜଣ

ହିଁଅନ୍ତି ଜୀବନ୍ତ କବର ଦିଆଯାଇଥିଲା । ସେମାନେ ବ୍ୟଭିଚାରିଣୀ ଥିଲେ । ପରବର୍ତ୍ତୀ କାଳରେ ସେମାନେ ବୃଦ୍ଧା ବେଗମଙ୍କର କନ୍ଦରେ ବହୁତ ଘଣ୍ଟାଇଥିଲେ । ଜନଗୋଟି କଙ୍କାଳର ପଦଧ୍ୱନି ଗୁରୁଅଧରେ ସେ ଶୁଣିପାରୁଥିଲେ ।

ଏହି ବୃଦ୍ଧାଙ୍କର ପୁତ୍ର ଓସ୍ୱାଜଦ ଅଲି ଜଣେ ଦାସୀକୁ ନିଜ ପାଖକୁ ଆକର୍ଷଣ କରିବାଦ୍ୱାରା ସେ ପୁଅକୁ ଏହି ଲାଳସାରୁ ରକ୍ଷା କରିବାପାଇଁ କହିଥିଲେ, ଏହି ଦାସୀ ବଡ଼ ଅଲକ୍ଷଣୀ । ଏହା ମୁଣ୍ଡରେ ସର୍ପଚକ୍ର ଅଙ୍କାଅଛି । ତେଣୁ ନବାବ ହାରେମ୍‌ର ଅନ୍ୟ ସବୁ ଦାସୀଙ୍କୁ ଡାକି ତାଙ୍କ ମୁଣ୍ଡ ପରୀକ୍ଷା କରି ଦେଖିଲେ ଯେ ଆଠ ଜଣଙ୍କ ମୁଣ୍ଡରେ ସର୍ପଚକ୍ର ଅଛି । ପଣ୍ଡିତମାନେ ଉପଦେଶ ଦେଲେ ଗରମ ଲୁହା ଦ୍ୱାରା ଏମାନଙ୍କ ମୁଣ୍ଡର ଶୋଧନ ଆବଶ୍ୟକ । ଏହି ଆଠଜଣଙ୍କ ମଧ୍ୟରୁ ଛଅଜଣ ପ୍ରାସାଦ ଛାଡ଼ି ଚାଲିଯାଇଥିଲେ । କିନ୍ତୁ ଦୁଇ ଜଣ ପ୍ରାଣ ଦେଇଥିଲେ ।

ଏତେ ଦୁଃଖ-କଷ୍ଟ ଭିତରେ ମଧ୍ୟ ହାରେମ୍‌ରେ ସୁଖ ଥିଲା । ଦେଶରେ ଦୁର୍ଭିକ୍ଷ ହେଲେ ମଧ୍ୟ ହାରେମ୍‌ରେ ଖାଦ୍ୟର କୌଣସି ଦିନ ଅଭାବ ନଥିଲା । ତୁର୍କୀ-ହାରେମ୍‌ର ଦୈନିକ ଖର୍ଚ୍ଚ—ମେଣ୍ଢାଛୁଆ ଦୁଇଶହ, ମେଣ୍ଢା ଏକଶହ, ବାଛୁରି ଚାରିଗୋଟି, ହଂସ ଷାଠିଏ, ଗିନି କୁକୁଡ଼ା ଦୁଇଶହ, ଅନ୍ୟାନ୍ୟ ହଂସ ଓ କୁକୁଡ଼ା ଦୁଇଶହ, ପାରି ଦୁଇଶହ । ବାଦଶାହଙ୍କ ପରି ବେଗମମାନେ ସୁନା କିମ୍ବା ରୁପା-ଥାଳିଆରେ ଖାଉଥିଲେ । ଶାହାଜାହାନ ତାଙ୍କ ଝିଅର ପାନ ଖାଇବା ଖର୍ଚ୍ଚପାଇଁ ସୁରଟ ବନ୍ଦରକୁ ଝିଅକୁ ଦେଇଥିଲେ । ସେହି ବନ୍ଦରର ବାର୍ଷିକ ରାଜସ୍ୱ ଥିଲା ତିରିଶ ଲକ୍ଷ ଟଙ୍କା । ମାନୁସି ଲେଖିଛନ୍ତି, ସମ୍ରାଟଙ୍କର ଝିଅପାଇଁ କାବୁଲ, ପାରସ୍ୟ ଓ କାଶ୍ମୀରରୁ ସୁରା ଆସୁଥିଲା ।

ହାରେମ୍‌ରେ ଖାଦ୍ୟପରି ଅନ୍ୟାନ୍ୟ ଜିନିଷର ମଧ୍ୟ ଆୟୋଜନ ଥିଲା ।

ଦେହରେ ଅଳଙ୍କାର ଭରିଥିଲା । ଡାହାଣ ହାତର ବୁଢ଼ା ଆଙ୍ଗୁଠିରେ ମୁକ୍ତାଖଚିତ ମୁଦିରେ ଗୋଟିଏ ଆଇନା ଥିଲା । ନିଜର ମୁହଁକୁ ସେହି ଆଇନାରେ ଦେଖି ବେଗମ ଭାବୁଥିଲେ, ଏଠାକୁ ଆସିବାପୂର୍ବରୁ ତାଙ୍କର ଏତେ ରୂପ ସତେ ଥିଲା ! ଅତର ଗନ୍ଧରେ ମହଲ ଆମୋଦିତ ହେଉଥିଲା । ଆଖିରେ ସୁରମା, ମୁହଁରେ ଓଢ଼ଣା । ଗୋଟିଏ ପାଉଣ୍ଡ ଓଜନ ଥିବା ପୋଷାକ ପିନ୍ଧୁଥିଲେ । ସେକାଳରେ ଏହାର ମୂଲ୍ୟ ଥିଲା ଷୋଳଶଠାରୁ ପଚିଶ ଟଙ୍କା ।

ତାହାପରେ ଅଛି ଶିଶମହଲ, ବାଇଜୀର ଆସର, କିସ୍‌ସା, ଲାୟଲାମଜନୁର ଉପାଖ୍ୟାନ କିମ୍ବା ଗୁଲିସ୍ତାନ ପାଠ, ନଓରୋଜ୍, ଖୁସ୍‌ରୋଜ୍, ମୀନାବଜାର,

ତାଇଖାନା, ହାମାମ । ଗ୍ରୀଷ୍ମକାଳରେ କର୍ଣ୍ଣୀର ଯାତା । ଅସୁସ୍ଥ ହେଲେ ବେମାର-ଖାନା । ଅସୁସ୍ଥ ବେଗମ ଦୀର୍ଘକାଳ ଅସୁସ୍ଥ ହେଲେ ବାଦଶାହ ଅବଶ୍ୟ ଦେଖିବାକୁ ଯାଉ ନ ଥିଲେ । କିନ୍ତୁ ଔଷଧ ଖାଇ ଖାଉ ମୃତ୍ୟୁ । ମୃତ୍ୟୁପରେ କାରୁକାର୍ଯ୍ୟଖଚିତ ସ୍ମୃତିସ୍ତମ୍ଭ । ତାହା କଣ ଦୁର୍ଲଭ ଭାଗ୍ୟ ନୁହେଁ ?

ଶାହାଜାହାନ ଥରେ ରାତିଅଧରେ ବାହାରପଟ୍ଟ ଚାରିଜଣ ଦାସୀଙ୍କ ଦୁଆରରେ ଶବ୍ଦ କରିଥିଲେ । ଘର ଭିତରକୁ ଯାଇ ପ୍ରଶ୍ନ କରିଥିଲେ—କହପାରିବ, ରାତି ପାହିବାପାଇଁ ଆଉ କେତେ ଡେରି ଅଛି ?

ପ୍ରଥମ ଝିଅଟି ଆଖି ରଗଡ଼ି ରଗଡ଼ି କହିଲା—ଆହୁରି ଡେରି ଅଛି ଜାହାଁପନା ! ମୋ ମୁହଁରେ ଏବେ ମଧ୍ୟ ପାନର ସ୍ୱାଦ ଲାଗିରହିଛି ।

ଦ୍ୱିତୀୟ ଝିଅଟି ଘରେ ଜଳୁଥିବା ମହମବତିକୁ ଦେଖାଇ କହିଲା—ରାତି ପାହିଆସିଥିଲେ ମହମବତିର ଆଲୋକ ଏତେ ଉଜ୍ଜ୍ୱଳ ଦେଖାଯାଆନ୍ତା ନାହିଁ ।

ତୃତୀୟ ଜଣକ କହିଲା—ରାତି ପାହିଆସିଥିଲେ ମୋ ହାତର ଏହି ମୁକ୍ତା ଗୁଡ଼ିକ ଥଣ୍ଡା ଲାଗିଥାଆନ୍ତା । ହାତଦେଇ ଦେଖନ୍ତୁ, ମୁକ୍ତାଗୁଡ଼ିକ ଏବେ ମଧ୍ୟ ଥଣ୍ଡା ହୋଇ ନାହିଁ ।

ଚତୁର୍ଥ ଝିଅଟି ଥିଲା କାଶ୍ମୀରୀ । ସେ କହିଲା—ରାତି ପାହିଆସିଲେ ମୋର ସ୍ନାନଘରକୁ ଯିବାପାଇଁ ଇଚ୍ଛା ହୁଏ । କିନ୍ତୁ ସେପରି ତ ମୋର କିଛି ମନେ ହେଉ ନାହିଁ ?

ଚାରିଜଣଙ୍କର ଉତ୍ତର ଶୁଣି ଶାହାଜାହାନ ସନ୍ତୁଷ୍ଟ ହୋଇ ତହିଁଆରଦିନ ଏହି ଚାରିଜଣ ଦାସୀଙ୍କୁ ନୂଆ ପଦବୀରେ ନିଯୁକ୍ତ କରିବାପାଇଁ ଆଦେଶ ଦେଇଥିଲେ । ପ୍ରଥମ ଜଣକ ତାମ୍ବୁଲ ବିଭାଗର ଅଧିକର୍ତ୍ତ୍ରୀ, ଦ୍ୱିତୀୟ ଜଣକ ଆଲୋକ ବିଭାଗର; ତୃତୀୟ ଜଣକ ଗହଣା ବିଭାଗର ଓ ଚତୁର୍ଥ ଜଣକ ସ୍ନାନଘରର ଅଧିକର୍ତ୍ତ୍ରୀ ହୋଇଥିଲେ । ଭାଗ୍ୟ ପ୍ରସନ୍ନ ଥିଲେ ଏହିପରି ଭାଗ୍ୟ ହାରେମରେ ଖୋଲିଯାଉଥିଲା ।

ଗୋଟିଏ ମହଲର ଦାସୀ ଅନ୍ୟ ମହଲକୁ ବାଟ ପାଉ ନ ଥିଲା । ତେଣୁ ନିଜ ଇଲାକାରୁ ପଦାକୁ ଗୋଡ଼ କାଢ଼ିଲେ ସେ ବାଟ ହଜାଇପକାଉଥିଲା । ବୋଧହୁଏ, ତାଙ୍କର ପ୍ରଧାନକର୍ତ୍ତ୍ରୀ ମାଲକ୍ ତାହାକୁ ଏହି ମୁହୂର୍ତ୍ତରେ ଖୋଜୁଥିବେ, କିନ୍ତୁ ସେ ବାଟ ଚିହ୍ନିପାରୁ ନାହିଁ ।

ରାଜକୁମାର ହାଲମଙ୍କର ଶଯ୍ୟାସଙ୍ଗିନୀ କିଏ ହେବ ? କିଏ ହେବ ପାଟରାଣୀ ? ଆକବର କିମ୍ବା ଶାହାଜାହାନଙ୍କ ପରି ସେ କାହାକୁ ଯୋଧପୁରୀ ବେଗମ

କିମ୍ବା ମମତାଜର ମର୍ଯ୍ୟାଦା ଦେଇନାହାନ୍ତି । ପ୍ରତ୍ୟେକ ବେଗମ ସୁଯୋଗ ପାଇବେ । ଜଣେ ପାଟରାଣୀ ହୋଇ ରାତିପରେ ରାତି ଶାହାଜାଦାଙ୍କର ସଙ୍ଗସୁଖ ଲାଭ କରିବ, ସେକଥା ହୋଇପାରିବ ନାହିଁ । ସାତଜଣ ବେଗମଙ୍କୁ ନେଇ ଗୋଟିଏ ଗ୍ରୁପ । ସାତଜଣ ବେଗମ ସାତ ରାତି ରହିବେ । ଗୋଟିଏ ସପ୍ତାହ ଶେଷ ହେବାମାତ୍ରେ ଅନ୍ୟ ଗୋଟିଏ ଗ୍ରୁପ ଆସିବେ । ଯଦି କେହି ସନ୍ତାନସମ୍ଭବା ହୋଇଯାଉଥିଲେ ତେବେ ବେଗମ ତାଲିକାରୁ ତାହାର ନାମ କଟିଯାଉଥିଲା । ଗୋଟିଏ ବର୍ଷମଧ୍ୟରେ ଶାହାଜାଦା ତାଙ୍କୁ ଗୋଟିଏ ରାତି ପାଇଁ ଇଚ୍ଛା କଲେ ମଧ୍ୟ ପାଖରେ ପାଇପାରିବେ ନାହିଁ । ଏହା ହିଁ ଥିଲା କଡ଼ା ନିୟମ । ଯଦି ପୁତ୍ରସନ୍ତାନ ହେଉଥିଲା, ତେବେ ସେହି ବେଗମଙ୍କୁ 'ଓମିଲ ବେ' ଉପାଧି ଦିଆହେଉଥିଲା ଓ କନ୍ୟା ଜନ୍ମ ହେଲେ 'ଉମାହାରେମ' । ତେଣୁ ତୁରସ୍କର ରାଜକୁମାର ହାଲିମଙ୍କର ହାରେମର ବେଗମ୍-ମାନଙ୍କ ମନଭିତରେ ପରସ୍ପରପ୍ରତି କୌଣସି ବିଦ୍ୱେଷ ନ ଥିଲା । କିନ୍ତୁ ସତରେ କଣ କୌଣସି ବିଦ୍ୱେଷ ନଥିଲା ?

ସୁଲତାନ ହାଲିମଙ୍କ ହାରେମର ଅସାମାନ୍ୟ ସୁନ୍ଦରୀ ଥିଲା ସୋଫିୟା । ତାଙ୍କୁ ନ ପାଇଲେ ହାଲିମଙ୍କର ରାତିଟା ଯେପରି କଷ୍ଟରେ ପାହୁଥିଲା ।

—କିନ୍ତୁ, ସୋଫିଆ କଣ ସନ୍ତାନସମ୍ଭବା ? —ଆଜ୍ଞା ! ଆପଣଙ୍କ ପାଖକୁ ଆଉ ଗୋଟାଏ ବର୍ଷ ସେ ଆସିବ ନାହିଁ ।

ଚମକିଉଠିଲେ ହାଲିମ୍ ! ହାକିମ୍‌ଙ୍କୁ ଡାକି ପରୀକ୍ଷା କଲେ । ହାକିମ୍ କହିଲେ କିଛି ବୁଝାଯାଉ ନାହିଁ । କିନ୍ତୁ ବେଗମ୍ ସାହେବାଙ୍କ କଥାକୁ ମାନିନେବାକୁ ହେବ ।

ହାଲିମ୍ ଆଉ କୌଣସି କଥା କହିଲେ ନାହିଁ । କିନ୍ତୁ ମନଭିତରେ ଝଡ଼ ବୋହିବାକୁ ଲାଗିଲା । ତେବେ କଣ ତାଙ୍କ ଲାଳସାର ଅତ୍ୟାଚାରଠାରୁ ନିଷ୍କୃତି ପାଇବାପାଇଁ ସେ ସନ୍ତାନସମ୍ଭବା ବୋଲି ପ୍ରଚାର କରୁଛି ? କିମ୍ବା ସେ କଣ ହାରେମ୍‌ର କୌଣସି କର୍ମଚାରୀ ସହିତ ଗୋପନ ପ୍ରଣୟରେ ଲିପ୍ତ ଅଛି ? ତେଣୁ ତାଙ୍କୁ ଏଡ଼ାଇଯିବାପାଇଁ ଛଳନା କରୁଛି ? ଅସମ୍ଭବ ଓ ଅବାନ୍ତର କଳ୍ପନାର ପ୍ରଚଣ୍ଡ ବିସ୍ଫୋରଣ ପରି ନିଜ ଭିତରେ ଧୂମାୟିତ ହେବାକୁ ଲାଗିଲେ ସୁଲତାନ । ରାତି ବିତିଗଲା । ଦାସୀ ଲତିଫା ସେହି ରାତିପାଇଁ ନିର୍ଦ୍ଦିଷ୍ଟ ବେଗମ ଜୁଲଫା-ବେଗମଙ୍କୁ ହାଲିମଙ୍କ ଘରେ ପହଞ୍ଚାଇଦେଲା । କିନ୍ତୁ, ଜୁଲଫାଙ୍କର ମୋଟା ଦେହକୁ ଦେଖି ଘୃଣାରେ ମୁହଁ ବୁଲାଇନେଲେ ହାଲିମ୍ । କିନ୍ତୁ ହାଲିମଙ୍କ ହାତକୁ ଧରି ଜୁଲଫା ଶଯ୍ୟାଆଡ଼େ ଆକର୍ଷଣ କରି କହିଥିଲା— ଅନେକ ରାତି ହେଲା ଶାହାଜାଦା ! ଆସନ୍ତୁ,

ବିଶ୍ରାମ କରିବେ । କିନ୍ତୁ ହାତକୁ ଛାଡିଦେଇଥିଲେ ହାଲିମ୍ । ଅପମାନର ଜ୍ୱାଲାରେ ଜଳିଉଠିଲା ଜୁଲ୍‌ଫା । ଦେହର ସମସ୍ତ ଆବରଣ ଖୋଲିଦେଇ ଉଜ୍ଜ୍ୱଳ ଆଲୋକ-ମଧ୍ୟରେ ଉନ୍ମାଦ ପରି ତାର୍ ଅନାବୃତ ଦେହର ବିପୁଳସମ୍ଭାର ମେଲିଦେଲା । କହିଲା— ଦେଖ ସୁଲ୍‌ତାନ, ତୁମ ସୋଫିୟାର ଯାହା ଅଛି, ମୋର ମଧ୍ୟ ତାହା ଅଛି । ତେବେ ତୁମେ କାହିଁକି, କେଉଁ ଅପରାଧରେ ଦୂରକୁ ଠେଲିଦେଉଛ ? ମୁଁ କଣ କରିଛି ? ଜାଣିପାରେ କି ?

—ତୁମେ କଣ କରୁଛ ବେଗମ୍ ସାହେବା ? ହାଲିମ ତାକୁ ଗୋଟାଏ ଧକ୍କା ମାରି ତଳେ ପକାଇଦେଇ ଝଡ଼ଗତିରେ ମାଡ଼ିଗଲେ ସୋଫିୟାର ମହଲ ଆଡ଼େ । ଦାସୀ, ଖୋଜାଙ୍କ ଦଳ ତାଙ୍କ ବାଟ ଛାଡ଼ିଦେଲେ । କିନ୍ତୁ ସୋଫିୟାର ମହଲର କୃଷ୍ଣକାୟ ଲମ୍ବର୍ସା ଖୋଜା ଖଣ୍ଡା ଉଞ୍ଚାଇ ଆଗରେ ଠିଆହୋଇଯାଇଥିଲା । ହାରେମ୍‌ର ନିୟମ । ସନ୍ତାନସମ୍ଭବା ବେଗମ୍‌ଙ୍କ ଘର ମଧ୍ୟକୁ ସୁଲ୍‌ତାନଙ୍କର ପ୍ରବେଶ ନିଷେଧ । କିନ୍ତୁ ତାକୁ ଧକ୍‌କାମାରି ଘର ଭିତରକୁ ପଶିଯାଇ ଥିଲେ ହାଲିମ । କୌଣସି କଥା ନ ଶୁଣି ଉନ୍ମାଦ ତେଉପରି ସୋଫିୟାର ଦେହଉପରକୁ ଲମ୍ଫ ପ୍ରଦାନ କରିଥିଲେ । ଆଜି ମଧ୍ୟ ତୁରସ୍କର ଗ୍ରାମମାନଙ୍କରେ ବୃଦ୍ଧମାନଙ୍କ ମୁହଁରେ ସୁନ୍ଦରୀ ସୋଫିୟା ବେଗମ ଓ ରାଜକୁମାର ହାଲିମଙ୍କ ଗଳ୍ପ ଶୁଣାଯାଏ ।

କିନ୍ତୁ, ହାରେମ୍‌ରେ ଯେଉଁ ଖୋଜାମାନଙ୍କୁ ନିଯୁକ୍ତ କରାଯାଉଥିଲା, ସେମାନଙ୍କ ପ୍ରତି ସୁଲ୍‌ତାନଙ୍କ ସତର୍କତାର ଅନ୍ତ ନ ଥିଲା । ନାନା ପ୍ରକାର କ୍ଳୀବ ସେମାନେ ସୃଷ୍ଟି କରିଥିଲେ । କିନ୍ତୁ ସେହି ଖୋଜାମାନଙ୍କ ମଧ୍ୟରୁ ଜଣେ ଜଣେ ବଳିଷ୍ଠ ପୁରୁଷ ଥିଲେ । ବାଦଶାହ ମଧ୍ୟ ସେମାନଙ୍କ ଗୁପ୍ତ ଜୀବନ ପାଖରେ ଜଣେ ଅକ୍ଷମ ଅସହାୟ ଅସ୍ତିତ୍ୱ ।

ଜଣେ ପର୍ଯ୍ୟଟକଙ୍କ ପାଖରେ ‘ତୁର୍କୀ’-ହାରେମ୍‌ର ଜଣେ ଖୋଜା ଜମାନ-ବନ୍ଦୀ ଦେଇ କହିଥିଲା—ମୋର କାମନା କୌଣସି ଦିନ ଲୁପ୍ତ ହୋଇଯାଇ ନ ଥିଲା । ହାରେମ୍‌କୁ ଆସି ତାହା ଆହୁରି ବଢ଼ିଯାଇଥିଲା । ସୁଲ୍‌ତାନଙ୍କ ଶୟନକକ୍ଷରେ ଝିଅମାନଙ୍କୁ ପହଞ୍ଚାଇଦେଇ ଆସିବାବେଳେ ନାନାକଥା ଭାବୁଥିଲି । ଦିନେ ସ୍ନାନଘରେ ଜଣେ ରୂପସୀକୁ ଗାଧୋଇଦେବାବେଳେ ମୋ ସାରା ଦେହରେ ଯେପରି ବିଦ୍ୟୁତ୍ ଖେଳିଯାଇଥିଲା । ମନେହେଲା, ଗୋଟିଏ ନାରୀ ଓ ମୁଁ—ଏହା ବ୍ୟତୀତ ପୃଥିବୀରେ ଆଉ କିଛି ନାହିଁ । ମୁଁ ଜ୍ଞାନ ହରାଇ ଉନ୍ମାଦ ହୋଇଗଲି । ଯେତେବେଳେ ମୁଁ ପ୍ରକୃତିସ୍ଥ ହେଲି ଭୟରେ ମୋର ଦେହ ଥରିଉଠିଲା । ଭାବିଲି, ମୋର ଆୟୁଷ ଶେଷ ହୋଇଆସିଲା, କିନ୍ତୁ ଆଶ୍ଚର୍ଯ୍ୟ କଥା ସେହି ଝିଅଟି ସବୁକଥା ଗୋପନ ରଖିଥିଲା । ନିଜର ଜୀବନକୁ ବିପନ୍ନ କରି ବେଳେବେଳେ ତାକୁ ଖୁସି

କରିବାକୁ ମୋତେ ହେଉଥିଲା । ଆଉ ଜଣେ ଖୋଜା କହିଥିଲା—ମୋର ଏକମାତ୍ର ଉପାସ୍ୟ ହେଉଛନ୍ତି ନାରୀ । ମୁଁ ହେଉଛି ଭାଗ୍ୟର ଦାସ । ଦାସ-ବ୍ୟବସାୟୀମାନଙ୍କର ଦୌଲତଯୋଗୁ ମୁଁ ଶକ୍ତ । ସେଥିପାଇଁ ମୋର କୌଣସି ଖେଦ ନାହିଁ । ମୋର କୌଣସି ସନ୍ତାନ ନାହିଁ । ମୁଁ କୌଣସି ଦିନ କାହାର ପିତା ବୋଲି କେବେ କହିପାରିବ ନାହିଁ । କିନ୍ତୁ ହଜାରେ ରମଣୀ ମନେ ମନେ ଜାଣନ୍ତି ମୁଁ ସେମାନଙ୍କୁ ତୃପ୍ତି ଦେଇଥିଲି । ସେମାନ ଲେଖକ ଲେଖିଯାଇଛନ୍ତି କୌଣସି ତୃଷ୍ଣାର୍ତ୍ତ, ଅତୃପ୍ତ ରମଣୀ ପାଖରେ ଖୋଜାମାନେ ଥିଲେ ଏକମାତ୍ର କାମ୍ୟ ।

ଏତେ ପାଇ ମଧ୍ୟ ସୁଲତାନମାନେ ଆହୁରି କିଛି ଏହି ହାରେମ୍‌ରୁ ଆଶା କରୁଥିଲେ । ନାନା ଦେଶରୁ ସେମାନେ ଏହି ସୁନ୍ଦରୀମାନଙ୍କୁ ସଂଗ୍ରହ କରି ହାରେମ୍‌କୁ ଆଣୁଥିଲେ । ଊନବିଂଶ ଶତାବ୍ଦୀର ଶେଷ ଆଡ଼କୁ ସୁଦାନରେ କୁଖ୍ୟାତ ଏଲ୍-ମାହଦିର ଆବିର୍ଭାବ ହୋଇଥିଲା । ସୁଦାନର ପ୍ରତ୍ୟେକ ଉପଜାତିଙ୍କ ପାଖରୁ ସେ ଶହ ଶହ ନାରୀ ଉପହାର ଆଦାୟ କରିଥିଲେ । ହାରେମରେ ଶ୍ୱେତାଙ୍ଗ ସ୍ତ୍ରୀ ମଧ୍ୟ ଥିଲେ । ପ୍ରତିଦିନ କେତେ ଘଣ୍ଟାପାଇଁ ସେହି ସ୍ତ୍ରୀମାନଙ୍କ ସହିତ ସେ ନାନାପ୍ରକାର ବିଳାସକ୍ରୀଡ଼ାରେ ମାତିରହୁଥିଲେ । ତାଙ୍କର ଧାରଣା ଥିଲା ଶ୍ୱେତାଙ୍ଗ ତୁର୍କୀ ସ୍ତ୍ରୀମାନେ ଅତି ଉଷ୍ଣ । ତେଣୁ କେବଳ ଶୀତଦିନରେ ସେମାନଙ୍କୁ ଆବଶ୍ୟକ ହେଉଥିଲା । ଖରାଦିନେ କୃଷ୍ଣାଙ୍ଗ ଆରବ ଓ ନିଗ୍ରୋ ସ୍ତ୍ରୀମାନଙ୍କୁ ସ୍ମରଣ କରୁଥିଲେ । ଏତେ ସୁଖ ଓ ବିଳାସ ମଧ୍ୟରେ ଥାଇ ମଧ୍ୟ ସେମାନେ ତୃପ୍ତ ନ ଥିଲେ । ସମ୍ରାଟ ଶାହାଜାହାନଙ୍କର ମଧ୍ୟ ପରକୀୟା ପ୍ରେମରେ ଆନନ୍ଦ ଥିଲା । ତାଙ୍କ ଜୀବନରେ ଦୁଇଜଣ ନାୟିକାଙ୍କର ଆବିର୍ଭାବ ହୋଇଥିଲା । ସେମାନେ କିନ୍ତୁ ବାଦଶାହଙ୍କର ହାରେମରେ ସ୍ଥାନ ପାଇପାରି ନ ଥିଲେ । ଜଣେ ଥିଲା ଫରଜାନ ବେଗମ ଓରେଫ ବବଜୀ । ଜାଫର ଖାଁଙ୍କର ସ୍ତ୍ରୀ । ସମ୍ପର୍କରେ ସେ ଶାହାଜାହାନଙ୍କର ଶାଳୀ । ଏହି ବବଜୀକୁ ସମ୍ପୂର୍ଣ୍ଣ ଭାବରେ ପାଇବାପାଇଁ ଶାହାଜାହାନ ଥରେ ଜାଫର ଖାଁକୁ ହତ୍ୟା କରିବାକୁ ଇଚ୍ଛା କରିଥିଲେ । କିନ୍ତୁ ଫରଜାନ ବେଗମ ସୁଲତାନଙ୍କୁ କହିଥିଲା ଏହାର କଣ ଆବଶ୍ୟକ ଅଛି ? ଖାଁ ସାହେବଙ୍କୁ ତୁମେ କୌଣସି ଦୂର ସ୍ଥାନକୁ ପଠାଇଦିଅ । ତେଣୁ ଜାଫର ଖାଁଙ୍କର ପାଟଣାକୁ ବଦଳି ହୋଇଯାଇଥିଲା । ପରବର୍ତ୍ତୀ କାଳରେ ସେ ଉଜୀର ହୋଇଥିଲେ । ବୋଧହୁଏ, ତାଙ୍କ ସ୍ତ୍ରୀର ଭାଗ୍ୟ ଯୋଗୁ ।

ଦ୍ୱିତୀୟ ଜଣ ଥିଲେ ଖାଲିଲୁଲ୍ଲା ଖାଁଙ୍କର ସ୍ତ୍ରୀ । ଲୋକମାନେ ଏହାଙ୍କୁ ଶାହାଜାହାନଙ୍କର ମଧ୍ୟାହ୍ନ-ଭୋଜନ ବୋଲି କହୁଥିଲେ ।

ନୈଶଭୋଜନର ଆୟୋଜନ ମଧ୍ୟ କମ୍ ନଥିଲା । ନଓରୋଜର ଉପଲକ୍ଷରେ ପ୍ରତିବର୍ଷ ପ୍ରାସାଦରେ ଆଠଦିନପାଇଁ ମୀନାବଜାର ବସୁଥିଲା । ଏହି କଥା ଆକବର ପ୍ରବର୍ତ୍ତନ କରିଥିଲେ । ଶାହାଜାହାନଙ୍କ ଅମଳରେ ଏହି ମୀନାବଜାରରେ ରୂପର ହାଟ ବସୁଥିଲା । ସେଠାକୁ କେବଳ ରୂପସୀ ନାରୀମାନେ ପ୍ରବେଶ କରିପାରୁଥିଲେ । ଏଠାରେ ମଧ୍ୟ ହାରେମ ପରି ଏକମାତ୍ର ପୁରୁଷ ବାଦଶାହ । ରମଣୀମାନେ ତାଙ୍କୁ ଆସନରେ ବସାଇ ବୋହିଆଣୁଥିଲେ । ପ୍ରହରୀମାନେ ଗୁଣ୍ଡପଟେ ଘେରି ରହିଥିଲେ । କଣିବାର ଅଭିପ୍ରାୟ ନେଇ ବାଦଶାହ ନିଜର ବାସନା ପ୍ରକାଶ କରୁଥିଲେ । ସେହି ରାତିରେ, ହୁଏତ ସେହି ସୁନ୍ଦରୀକୁ ଆମନ୍ତ୍ରଣ କରି ଡାକରା ଆସିବ ବାଦଶାହଙ୍କ ଶୟନକକ୍ଷରୁ । କେହି କେହି ମଧ୍ୟ ସବୁଦିନ ପାଇଁ ହାରେମରେ ସ୍ଥାନ ପାଇଯାଉଥିଲେ । କେହି ମଧ୍ୟ ତହିଁଆର ଦିନ ଲୁଗାରେ ମୋହର ବାନ୍ଧି ଫେରିଯାଉଥିଲା । ଥରେ ଦେଖାଯାଇଥିଲା, ଏହିପରି ଗୋଟିଏ ମୀନାବଜାର ମେଳାରେ ତିରିଶ ହଜାର ରୂପସୀ ସମବେତ ହୋଇଥିଲେ ।

ତଥାପି ଆଶ୍ଚର୍ଯ୍ୟର କଥା ଯେ ଏତେ ପାଇ ମଧ୍ୟ ନବାବ-ବାଦଶାହ, ସୁଲତାନ-ସମ୍ରାଟମାନେ ଅତୃପ୍ତ ରହୁଥିଲେ । ସେମାନଙ୍କର ଯୌନ ଜୀବନ ଓ ଆଚରଣରେ ନାନା ପ୍ରକାର ବିକୃତି ଦେଖାଯାଉଥିଲା । ପରବର୍ତ୍ତୀ ଜୀବନରେ ଜାହାଙ୍ଗୀର ସୁରା ବ୍ୟତୀତ ଆଉ କିଛି ଇଚ୍ଛା କରୁ ନ ଥିଲେ । ନୁରଜାହାନ ହୁକୁମ କରିଥିଲେ, ସମ୍ରାଟ୍ ଦିନକୁ ନଅ କପ ସୁରାପାନ କରିବେ । ଆଉ ଅଧିକ ସୁରା ପାନ କରିପାରିବେ ନାହିଁ । କିନ୍ତୁ, ଦିନେ ରାତିରେ ନିଶାଗ୍ରସ୍ତ ସମ୍ରାଟ୍ ଦଶମ କପ ପାଇଁ ଜିଗର କରିଥିଲେ । ନୁରଜାହାନ ଆଦୌ ଦେଲେ ନାହିଁ । ତେଣୁ ଜାହାଙ୍ଗୀର ରାଗିଯାଇ ତାଙ୍କ ଉପରକୁ କୁଦିପଡ଼ି ଉନ୍ମତ୍ତ ଉଲ୍ଲାସରେ ମାତିଉଠିଲେ । ନୁରଜାହାନ ଆତଙ୍କରେ ଚିତ୍କାର କରିଉଠିଲେ । ପାଖ ଘରେ ବାନ୍ଦୀମାନେ ଗୀତର ଆୟୋଜନ କରୁଥିଲେ । ସେମାନେ ଦଉଡ଼ିଆସିଥିଲେ । ସେମାନଙ୍କୁ ଦେଖି ସମ୍ରାଟ୍ ପ୍ରକୃତିସ୍ଥ ହୋଇଯାଇଥିଲେ । କିନ୍ତୁ ଆହତ ନୁରଜାହାନ କ୍ରୁଦ୍ଧ ହୋଇଥିଲେ । ଏହାପରେ ଅନେକ ଦିନଯାଏ ସେ ସମ୍ରାଟଙ୍କ ପାଖକୁ ଆସିବାପାଇଁ ରାଜି ହୋଇ ନ ଥିଲେ ।

ଅଯୋଧ୍ୟାର ନବାବ ଓ୍ୱାଜିଦ୍‌ଅଲି ମଧ୍ୟ ଜଣେ ଅଦ୍ଭୁତ ବିକୃତ-ପୁରୁଷ ଥିଲେ । ସେ ନିଜେ ସ୍ତ୍ରୀଲୋକ ସାଜି ପରୀମାନଙ୍କୁ ନେଇ ଖେଳରେ ମାତୁଥିଲେ । ସୁବେଶା ନର୍ତ୍ତକୀମାନଙ୍କର ପିଠିରେ ନକଲି ପକ୍ଷୀ ବାନ୍ଧି ସେମାନଙ୍କୁ ପରୀ ସଜାଇ ଦିଆଯାଉଥିଲା । ସିରାଜଉଦ୍ଦୌଲାଙ୍କର ନିଶା ଥିଲା 'ପାଗଳ ନାଚ' । କୌଣସି ଇଂରେଜ ଐତିହାସିକ କହିଛନ୍ତି ସେ ଗୋଟିଏ ବିଭତ୍ସରସର ରସିକ ଥିଲେ । ମହାରାଜା ରଣଜିତ୍ ସିଂହଙ୍କ ବିଷୟରେ ମଧ୍ୟ ନାନାପ୍ରକାର କଥା ଶୁଣାଯାଏ । ରଣଜିତ୍ ସିଂହ

ଯେଉଁ ମୋହିନୀ ନର୍ତ୍ତକୀମାନଙ୍କ ଦ୍ୱାରା ପରିବେଷ୍ଟିତ ଥିଲେ, ସେମାନେ ନାରୀ ନୁହନ୍ତି । ପ୍ରକୃତରେ ସେମାନେ ଅଳ୍ପ ବୟସର ପୁଅପିଲା ଥିଲେ ।

ନାନାପ୍ରକାରର ବିକାର ଓ ବିକୃତି ଏମାନଙ୍କ ମଧ୍ୟରେ ଥିଲା । ଜଣେ ପୁରୁଷ ମନରେ ଅସଂଖ୍ୟ ନାରୀ ଉପରେ ପ୍ରଭୁତ୍ୱର ବାସନା ମଧ୍ୟ ଏକ ପ୍ରକାର ବିକୃତି । ଉତ୍ତେଜକ ସୁରା, ତାବିଜ୍, ଗୁଣିଆ, ହାକିମ ସବୁକିଛି ଚେଷ୍ଟାର ଅନ୍ତ ନ ଥିଲା । ବିଚିତ୍ର ବାଟଦେଇ ଉନ୍ମାଦ ପରି ଚରିତାର୍ଥତା କେହି କେହି ଖୋଜିଥିଲେ । ନିଷ୍ଠୁରତା, ପୈଶାଚିକତା ବ୍ୟତୀତ ସେମାନଙ୍କ ମନରେ ଆଉ କୌଣସି ଆନନ୍ଦ ନଥିଲା । ତେଣୁ ହାରେମର ସ୍ୱୟଂ ଅଧୀଶ୍ୱର ଥିଲେ ସବୁଠାରୁ ଦରିଦ୍ର, ବଞ୍ଚିତ, ଦୀନ ।

କୌଣସି କୌଣସି ଖୋଜା ମଧ୍ୟ ପ୍ରତିଶୋଧ ନେଇଥିଲେ । ବେଗମ, ଦାସୀ ଓ ବିବିମାନେ ମଧ୍ୟ ବାଦଶାହଙ୍କ ଉପରେ ପ୍ରତିଶୋଧ ଏହି ହାରେମରେ ନେଇଥିଲେ । ସମସ୍ତେ ନିଜର ଭାଗ୍ୟକୁ ମାନିନେଇ ନ ଥିଲେ । ସେମାନେ ସହସ୍ରାଧିକ କୌଶଳରେ ଚରିତାର୍ଥତା ଖୋଜିଛନ୍ତି । ମୋହିନୀ କେତେବେଳେ ନାଗୁଣୀ; ସମ୍ରାଟଙ୍କର ହୃଦୟମଣି ମଧ୍ୟ କେତେବେଳେ ହୃଦୟହୀନା ଛଳନାମୟୀ ହୋଇଛି । ଅବଶ୍ୟ ଏହାର ଜୋରମାନାଙ୍କବରେ ଅନେକଙ୍କୁ ପ୍ରାଣଦେବାକୁ ହୋଇଛି । ଏଥିପାଇଁ ଜାହାନାରାଙ୍କର ଦୁଇଜଣ ପ୍ରେମିକଙ୍କୁ ଶାହାଜାହାନ ହତ୍ୟା କରିଥିଲେ ବୋଲି ପୂର୍ବରୁ କୁହାଯାଇଛି । କିନ୍ତୁ ତୃତୀୟ ବ୍ୟକ୍ତି ? ଜାହାନାରା ତାର ନାମ ଦେଇଥିଲେ ଦୁଲେରା । କୌଣସି ଜଣେ ନର୍ତ୍ତକୀର ପୁତ୍ର । ବୟସ ଅଳ୍ପ ଓ ସୁପୁରୁଷ । ଲୋକେ କୁହନ୍ତି ସମ୍ରାଟ୍-ଦୁହିତା ତାହାରି ପାଖରେ ନିଜକୁ ସମର୍ପଣ କରିଦେଇଥିଲେ । ଦୁଲେରାକୁ ସେ ଯଥୋଚିତ ସମ୍ମାନ ଦେଇଥିଲେ । ତାର ନିଜର ତାଞ୍ଜମ ଓ ପତାକା ଥିଲା । ଥରେ ଦୁଲେରା ପ୍ରାସାଦ ଆଡ଼େ ନିଜର ପତାକା ଉଡ଼ାଇ ଯିବାସମୟରେ ମହବତ୍ ଖାଁ ତାହା ଦେଖି ସହି ନପାରି ଶାହାଜାହାନଙ୍କ ପାଖରେ ପହଞ୍ଚିଲେ । ମହବତ୍ ଖାଁ କହିଲେ ଆଜିକାଲି ନର୍ତ୍ତକୀମାନଙ୍କର ପୁତ୍ରମାନେ ଦରବାରୀ ପତାକା ଉଡ଼ାଇ ଯିବାଆସିବା କରୁଛନ୍ତି । ତେଣୁ ସେ ନିଜର ପତାକା ଖୋଲି ରଖିଦେଇଛନ୍ତି । ତାପରେ ସମ୍ରାଟ୍ ସବୁ କଥା ଶୁଣିଥିଲେ । ମହବତ୍ ଖାଁ ତାଙ୍କୁ ଆକବରଙ୍କର ନିଷେଧାଜ୍ଞା ସ୍ମରଣ କରାଇ ଦେଇଥିଲେ ଯେ ଶାହାଜାଦୀମାନଙ୍କର ବିବାହ ଦେବା ଠିକ୍ ନୁହେଁ । ତେଣୁ ଜାହାନାରାଙ୍କ ବାସନା ପୂର୍ଣ୍ଣ ହୋଇ ନ ଥିଲା ।

କିନ୍ତୁ ଜାହାନାରା ପ୍ରତିଶୋଧ ନେଇଥିଲେ । ଶାହାଜାନଙ୍କ ନିକଟ ଆତ୍ମୀୟ ହେଉଛନ୍ତି ଶାଇସ୍ତା ଖାଁ ବାଦଶାହ, ଖାଁ ସାହେବଙ୍କର ଭିଣୋଇ । ତେଣୁ ଯେଉଁ ଲୋକ ଜାହାନାରାର ସୁଖକୁ କାଢ଼ିନେଇଛି ତାହାକୁ କେବେହେଲେ ସୁଖରେ ରହିବାକୁ

ଦେବେ ନାହିଁ । ଶାସ୍ତେସ୍ତ ଖାଁଙ୍କର ସ୍ତ୍ରୀକୁ ଅରେ ସେ ନିମନ୍ତ୍ରଣ କରି ଡକାଇ ପଠାଇ ଆଦର-ଆପ୍ୟାୟନ କଲେ । ଖାଇବାପରେ ନୃତ୍ୟଗୀତର ଆୟୋଜନ ଥିଲା । ସମସ୍ତେ ଯେତେବେଳେ ଆନନ୍ଦରେ ମଗ୍ନ, ଜାହାନାରା ସେତେବେଳେ ଅତିଥିଙ୍କୁ ନେଇ ଗୋଟିଏ କକ୍ଷରେ ପହଞ୍ଚିଲେ । ଶାସ୍ତେସ୍ତ ଖାଁଙ୍କର ସ୍ତ୍ରୀ ଦେଖିଲେ ସେହି ଘରେ ଶାହାଜାହାନ କ୍ଷୁଧାର୍ତ୍ତ ବାଘପରି ବସିଛନ୍ତି । ପଳାଇଯିବାର ବାଟ ନାହିଁ । ଜାହାନାରା ସେତେବେଳେ ଅଦୃଶ୍ୟ ହୋଇଯାଇଥିଲେ ।

ରୌଶନାରା ମଧ୍ୟ ଏହି କଥାରୁ ବାଦଯାଇଥିଲେ । ତାଙ୍କର ପ୍ରେମିକମାନେ ଦୁଇଥର ଖୋଜାମାନଙ୍କ ଦ୍ୱାରା ଧରାପଡ଼ିଲେ । ଅଉରଙ୍ଗଜେବ ସେମାନଙ୍କୁ ମୁକ୍ତ ଦେଇଥିଲେ । କିନ୍ତୁ ଦ୍ୱାରରକ୍ଷକ ଓ ପ୍ରାସାଦର ଅନ୍ୟ ପ୍ରହରୀମାନେ ଶାସ୍ତି ପାଇଥିଲେ ।

ହାରେମ୍‌ରେ ସବୁବେଳେ ଷଡ଼ଯନ୍ତ୍ର ଚାଲିଥିଲା । ବେଗମମାନେ ମଧ୍ୟ ଏଥିରୁ ବାଦ ଯାଇ ନ ଥିଲେ । ପ୍ରାୟ ଦୁଇ ହଜାର ବିବି ହାରେମ୍‌ରେ ଥିଲେ । କିନ୍ତୁ ସନ୍ତାନ ମାଗିବାର ଅଧିକାର ମାତ୍ର ଚାରିଜଣଙ୍କର ଥିଲା । ତାହା କେବଳ ମାଗିବାର ଅଧିକାର ମାତ୍ର । ସନ୍ତାନ ପାଇଲେ ମଧ୍ୟ ସେହିମାନେ ଭବିଷ୍ୟତରେ ସିଂହାସନ ପାଇବାପାଇଁ କୌଣସି ବିପଦର କାରଣ ନ ଥିଲେ କେବଳ ସେହି ସନ୍ତାନମାନଙ୍କୁ ରଖିପାରୁଥିଲେ ।

ଅପ୍ରୟୋଜନୀୟ ସନ୍ତାନଗୁଡ଼ିକ ଗର୍ଭର ଅନ୍ଧକାର ମଧ୍ୟରେ ଖୋଜାମାନଙ୍କ-ଦ୍ୱାରା ନିରୁଦ୍ଦେଶରେ ଯାତ୍ରା କରୁଥିଲେ । ଅନେକ ନାରୀ ଏହି କାମନାର ସ୍ୱାଦ ମଧ୍ୟ ଜାଣିପାରି ନାହାନ୍ତି । ସେମାନେ ଅନେକ ସୁଖରେ ଥିଲେ; କିନ୍ତୁ ସନ୍ତାନଧାରଣ କରି ନ ଥିଲେ । ହାତରେ ଗୋଲାପ, ଦେହରେ ବହୁତ ମଣିମୁକ୍ତାର ଅଳଙ୍କାର, ଆଖିରେ କଜଳ, ଓଠରେ ପାନର ରଙ୍ଗ, ସବୁ କିଛି ସେମାନଙ୍କର ଥିଲା । କିନ୍ତୁ ଜନନୀ ହେବାର ସାମର୍ଥ୍ୟ ନ ଥିଲା । ସେମାନେ ଏକପ୍ରକାର ଚିରଯୌବନା ଥିଲେ । ସୁଲତାନ ବାଦଶାହମାନେ କେବଳ ନିଜର କାମନାକୁ ତୃପ୍ତ କରି କ୍ଷାନ୍ତ ହେଉ ନ ଥିଲେ । ଏହି ରୂପସୀମାନଙ୍କର ସର୍ବସ୍ୱ କାଢ଼ିନେଇ କେବଳ କଣ୍ଢେଇ ପରି ସେମାନଙ୍କୁ ରଖିଥିଲେ । ମଧ୍ୟ-ପ୍ରାଚ୍ୟର ହାରେମ୍‌ମାନଙ୍କରେ ସର୍ବକାମନାମୁକ୍ତ ଏହି ରୂପସୀ ନାରୀମାନଙ୍କର ଦଳ ଏବେ ମଧ୍ୟ ଅଛନ୍ତି ବୋଲି ଶୁଣାଯାଏ । ସେମାନେ ହାରେମ୍‌ର ପ୍ରଭୁଙ୍କୁ କେବଳ ସବୁ କିଛି ଦିଅନ୍ତି, ନିଜେ କିଛି ପାଆନ୍ତି ନାହିଁ । ନ ପାଇଲେ ମଧ୍ୟ ସେମାନେ ପାଇବାପାଇଁ ଇଚ୍ଛା କରନ୍ତି । ତେଣୁ ନାନା ପ୍ରକାରରେ ଲୁଚିଛି ସେମାନେ ତୃପ୍ତି ପାଉଥିଲେ ।

ଜଣେ ସମାଜବିଜ୍ଞାନୀ ଲେଖିଛନ୍ତି, ଫରାସୀ ଓ ଇଂରେଜ ସୈନ୍ୟମାନେ ଚୀନଦେଶର ହାରେମ୍‌ରେ ଏପରି ସବୁ ବିଚିତ୍ର ସରଞ୍ଜାମ ପାଇଥିଲେ, ଯାହାକି ଅବିଶ୍ୱାସ୍ୟ । ମଧ୍ୟପ୍ରାଚ୍ୟର ହାରେମ୍‌ଗୁଡ଼ିକରେ ନାନା ରକମର ପ୍ରମାଣ ମିଳିଛି । ଜଣେ ପର୍ଯ୍ୟଟକ ଲେଖିଛନ୍ତି, ମୁସଲମାନମାନଙ୍କର ହାରେମ୍‌ରେ ମଦ, ଭାଙ୍ଗ, ଅଫିମର ପ୍ରବେଶ ନିଷିଦ୍ଧ ଥିଲା । ଭେଣ୍ଡି, କାକୁଡ଼ି ଓ ଏହି ଜାତୀୟ ଫଳ ମଧ୍ୟ ନିଷିଦ୍ଧ ଥିଲା ।

ବିକୃତି ଏହିଠାରେ ମଧ୍ୟ ଶେଷ ହୋଇଯାଉ ନଥିଲା । ମାନୁସି ଲେଖିଛନ୍ତି— ଥରେ ଖବର ଆସିଲା ଶାହାଆଲମଙ୍କର ଦାସୀ ପାଗଳୀ ହୋଇଯାଇଛି । ବେଳେ-ବେଳେ ସେ ଏପରି ଉନ୍ମାଦ ହୋଇଯାଉଥିଲା ଯେ ହାତରୁ କାଚ ଖୋଲି, ମୁଣ୍ଡର ବାଳକୁ ଟାଣି, ନିଜର ଦେହକୁ କାମୁଡ଼ି ପକାଉଥିଲା । ମାନୁସି ଏହି ରୋଗୀକୁ ଜଣେ ପୂର୍ଣ୍ଣଯୌବନା ଦେଖି ବିବାହ କରାଇଦେବାର ପ୍ରସ୍ତାବ ଦେଲେ । ପ୍ରକୃତରେ ବିବାହପରେ ସେହି ତରୁଣୀ ଦାସୀ ଜଣକ ଭଲ ହୋଇଯାଇଥିଲା ।

ଏହି ଖବର ପାଇ ହାରେମ୍‌ର ଅନ୍ୟାନ୍ୟ ଯୁବତୀ ଦାସୀମାନେ ଏହିପରି ପାଗଳର ଅଭିନୟ ଆରମ୍ଭ କରିଦେଲେ । ମାନୁସି ଏହା ଦେଖି ମନେ ମନେ ହସିଥିଲେ । କିନ୍ତୁ ଶାହାଆଲମଙ୍କୁ କିଛି କହି ନ ଥିଲେ । ତାଙ୍କ ବ୍ୟବସ୍ଥାନୁଯାୟୀ କେତେଜଣ ଦାସୀ ମୁକ୍ତି ପାଇଥିଲେ । କିନ୍ତୁ ଯେଉଁମାନେ ଏପରି ସୁଯୋଗ ପାଇ ନ ଥିଲେ, ସେହି ହଜାର ହଜାର ତରୁଣୀ ବଞ୍ଚିବାପାଇଁ ନାନା ପ୍ରକାର କୌଶଳର ଆଶ୍ରୟ ନେଇଥିଲେ । ବାସନା ତୃପ୍ତି ପାଇଁ କେବଳ ଗୋଟିଏ ଉପାୟ ଥିଲା । ତାହା ସ୍ୱପ୍ନ । ସେମାନଙ୍କୁ ସ୍ୱପ୍ନରେ ଜିନ୍ ଆସି ଆନନ୍ଦ ଦେଉଥିଲେ । ସୁଲତାନ ଏହିକଥା ଅବିଶ୍ୱାସ ନ କରି କହିଲେ—ବୋଧହୁଏ ହୋଇଥିବ । କାରଣ ସେ ଅନେକ ସମୟରେ ସୁପ୍ତ ଅବସ୍ଥାରେ ହୁରମାନଙ୍କୁ ପାଖରେ ପାଉଥାଆନ୍ତି । ସେହିଦିନଠାରୁ ହାରେମ୍‌ର ଝିଅମାନଙ୍କ ପାଖରେ 'ଜିନ୍'ର ଚର୍ଚ୍ଚା ଚାଲିଲା । ଯେଉଁମାନେ ବୁଦ୍ଧିମତୀ, ଯେଉଁମାନେ ଜିନ୍ ଦ୍ୱାରା ତୃପ୍ତି ଖୋଜି ପାଉ ନ ଥିଲେ, ସେମାନେ କେବଳ ଏହି କଥାକୁ ନିଜର ସ୍ୱାର୍ଥପାଇଁ ମାନି ନେଉଥିଲେ । ଯଦି କେବେ କୌଣସି ହଂସାକାତର ଖୋଜା, ଶଯ୍ୟା ଆଡ଼କୁ ଇଙ୍ଗିତ ଦିଏ, ତେବେ ହାରେମ୍‌ର ଚତୁରିକା ହସିଦେଇ କୈଫିୟତ୍ ଦେଉଥିଲା—ଏହା ଜିନ୍ । ଜଣେ ଐତିହାସିକ ଲେଖିଛନ୍ତି— ହାରେମ୍‌ର ସବୁ କାହାଣୀ ଯଦି ଜଣାଯାଇଥାଆନ୍ତା, ତେବେ ପୃଥିବୀର ବହୁ ବଡ଼ ବଡ଼ ବଂଶ-ଗୁଡ଼ିକର ପରିଚୟ ବୋଧହୁଏ ନୂଆ ଭାବରେ ଲେଖାଯାଇପାରନ୍ତା । ତୈମୁରଙ୍କର ଜନ୍ମ ଜଣେ କୁମାରୀ-କନ୍ୟାର ଗର୍ଭରୁ ହୋଇଥିଲା । ସନ୍ଦେହ କରିଥିବା ପିତାଙ୍କୁ ସେହି କୁମାରୀ କନ୍ୟା କହିଥିଲା, ମୋର ସନ୍ତାନର ପିତା ସୂର୍ଯ୍ୟ; କାରଣ, ପିତା ଦେଖିଥିଲେ କନ୍ୟାର ବିଛଣାଉପରେ ସୂର୍ଯ୍ୟାଲୋକ ପଡ଼ୁଛି ।

ଏହି ହାରେମ୍ ମିଥ୍ୟାରେ ପୂର୍ଣ୍ଣ— ହାହାକାର ପୂର୍ଣ୍ଣ । ହାରେମ୍‌ରେ କାମନା ଭରିରହିଥିଲା । ସୁଯୋଗ ପାଇଲେ ପାପପଣ ବାହାରି ପଡ଼ୁଥିଲା । ପାରସ୍ୟ ଯୁଦ୍ଧ ସମୟରେ ଆଫଗାନିସ୍ଥାନ ଓ ସିନ୍ଧୁ ପ୍ରଦେଶର ଇଙ୍ଗ-ଭାରତୀୟ ସୈନିକମାନେ ସେହି କ୍ଷୁଧାର ପରିଚୟ ପାଇଥିଲେ । ପରାଜିତ ରାଜ୍ୟର ହାରେମ୍‌ର ସ୍ତ୍ରୀମାନେ କ୍ଷୁଧାର୍ତ୍ତ ପଶୁପରି ଏହି ବିଜୟୀ ସୈନ୍ୟମାନଙ୍କ ପଛରେ ଗୋଡ଼ାଇଥିଲେ । ସେମାନେ ଅର୍ଥ ଖାଦ୍ୟ କିଛି ଚାହିଁ ନ ଥିଲେ । ସେମାନେ ଚାହାନ୍ତି ଆନନ୍ଦ । ସୈନ୍ୟମାନଙ୍କୁ ଆଦେଶ ଥିଲା, ସ୍ତ୍ରୀଲୋକମାନଙ୍କୁ ସେମାନେ ସମ୍ମାନ ଦେଖାଇବେ । କିନ୍ତୁ ଏହି ସ୍ତ୍ରୀଲୋକମାନେ ଓଢ଼ଣା ଓ ପରିଧାନ ଫୋପାଡ଼ିଦେଇ ଏହି ସୈନ୍ୟମାନଙ୍କ କୋଳରେ ଲୋଟିପଡ଼ିଥିଲେ ।

ଯେଉଁ ହାରେମ୍ ଅତି ପୁରୁଣା, ଯୁଗ-ଯୁଗ ଧରି ଯେଉଁଠାରେ ବିକୃତି ସଞ୍ଚିତ ହୋଇ ଅନ୍ଧକାର ରାଜତ୍ୱ କରୁଥିଲା, ସେଠାର ହାରେମ୍‌ର ସ୍ତ୍ରୀମାନଙ୍କର ଆଗ୍ରହ ବ୍ୟବହାର ଅନ୍ୟ ପ୍ରକାର ଥିଲା । ସେମାନେ କେବେହେଲେ ଆନନ୍ଦ କଥା ଭାବିପାରୁ ନ ଥିଲେ । ତେଣୁ ଯେତେବେଳେ ଆନନ୍ଦ ପାଇବାର ସୁଯୋଗ ସେମାନଙ୍କ ପାଖରେ ପହଞ୍ଚିଥିଲା, ସେମାନେ କିନ୍ତୁ ବିଭ୍ରାଟ ସୃଷ୍ଟି କରିଥିଲେ ।

୧୮୪୧ ମସିହାରେ କାବୁଲରେ ଥିବା ବ୍ରିଟିଶ-ବାହିନୀର ତରୁଣ ସୈନ୍ୟମାନେ ଗୋଟାଏ ପ୍ରକାର ଜୀବନଯାପନ କରି ଅତିଷ୍ଠ ହୋଇପଡ଼ିଥିଲେ । ସେମାନେ ବହୁଦିନଯାଏ ନାରୀର ସ୍ପର୍ଶ ପାଇ ନଥିଲେ । ସେମାନଙ୍କ ମଧ୍ୟରୁ କେତେକ ସୈନ୍ୟ ଖୋଜା ପ୍ରହରୀମାନଙ୍କୁ କିଛି ଲାଞ୍ଚ ଦେଇ, ଦିନେ ରାତିରେ ପାଚେରୀ ଡେଇଁ ଅମୀରମାନଙ୍କ ହାରେମ୍ କନ୍ୟାମାନଙ୍କ ଘରେ ପଶିଥିଲେ । ଏହି ସୈନ୍ୟମାନଙ୍କୁ ଦେଖି ସ୍ତ୍ରୀମାନେ ଭାବିଲେ ବୋଧହୁଏ ଜିନ୍ ଆସିଛି । କିନ୍ତୁ ଏମାନଙ୍କ ମୁହଁରେ ଇଂରାଜୀ ଓ ହିନ୍ଦୁସ୍ଥାନୀ କଥା ଶୁଣି ଭାବିଲେ ଏମାନେ ଜିନ୍ ନୁହନ୍ତି । ଏମାନେ କୌଣସି ଦେଶର ପୁରୁଷ । ବହୁତ ଦିନ ପୂର୍ବରୁ ଅମୀରମାନଙ୍କ ହାରେମ୍-କନ୍ୟାମାନେ ପୁରୁଷର ଅସ୍ତିତ୍ୱ କଥା ଭୁଲିଯାଇଥିଲେ । ପରିତୃପ୍ତି ପାଇଁ ସେମାନେ ଅନ୍ୟ ପ୍ରକାର ପନ୍ଥା ଅବଲମ୍ବନ କରୁଥିଲେ । ପୁରୁଷ ସେମାନଙ୍କ ଜୀବନରେ ଅବାନ୍ତର । ତେଣୁ ସେମାନେ ଜଙ୍ଗଲର ବନ୍ଦୀ ବାଘ ପରି ଏହି ସୈନ୍ୟମାନଙ୍କ ଉପରକୁ କୁଦିପଡ଼ି ସେମାନଙ୍କୁ ନିଷ୍ଠୁରଭାବରେ ହତ୍ୟା କଲେ ।

ତହିଁଆରଦିନ ଏହି ଖବର ପ୍ରଚାର ହୋଇଯିବା ମାତ୍ରେ ଦେଶରେ ବିଦ୍ରୋହ ଦେଖାଗଲା । ଜନତାର ରାଗର ନିଆଁରେ ପ୍ରାଣ ଦେଲେ ସାର୍ ଆଲେକ୍‌ଜାଣ୍ଡାର ବାର୍ନେସ୍, ରେସିଡେଣ୍ଟ କମିଶନର । ପ୍ରାଣ ଦେଲେ ଆଫଗାନର ରାଜା ଶା-ସୁଜା ।

କିନ୍ତୁ ପ୍ରକୃତରେ ଯେଉଁଦିନ ମୁକ୍ତିର ଦିନ ଆସିଥିଲା, ସେଦିନ ହାରେମର ବିଷଣ୍ଣ ନାରୀଦଳ ଆନନ୍ଦିତ ହୋଇଥିଲେ ।

୧୯୦୯ ମସିହାର କଥା । କାମାଲପାଶା ଘୋଷଣା କରିଥିଲେ —ଆଜିଠାରୁ ତୁରସ୍କରେ ହାରେମ୍ ନିଷିଦ୍ଧ ହେଲା । ବେଗମମାନେ ମୁକ୍ତ । ସେମାନେ ଯେଉଁଠାକୁ ଖୁସି ଯାଇପାରନ୍ତି । ଯେଉଁମାନଙ୍କର କେଉଁଠାକୁ ଯିବାପାଇଁ ସ୍ଥାନ ନାହିଁ, ସେମାନଙ୍କର ଦାୟିତ୍ୱ ସରକାର ନେବେ ।

ସେ ଦିନର ଶୋଭାଯାତ୍ରା ମୁଁ ବି କେହି ଦେଖି ନ ଥିଲେ । ଏକତିରିଶ ଗୋଟି ଗାଡ଼ିରେ ବୋହାହୋଇ ହାରେମର ସ୍ତ୍ରୀଲୋକମାନେ ଚାଲିଥାଆନ୍ତି । ଇଲଡିଜ୍‌ଠାରୁ ଟପ୍-କାପୁ ପ୍ରାସାଦ ଆଡ଼େ । ବୟସ ପନ୍ଦରଠାରୁ ପଚିଶଯାଏ ନାନା ବୟସର ଅନନ୍ତର ସତର ରୂପସୀ ଚାଲିଥାଆନ୍ତି । କାମାଲପାଶାଙ୍କର ନିର୍ଦ୍ଦେଶ ଥିଲା ଗ୍ରାମମାନଙ୍କୁ ଯେ ଆତ୍ମୀୟମାନେ ଆସି ନିଜର ପରିଚିତ ଝିଅ ଓ ସ୍ତ୍ରୀ-ଲୋକମାନଙ୍କୁ ନେଇଯାଇପାରନ୍ତି । ଯଦି ଅଭାବ ଯୋଗୁ ସେମାନେ ନିଜ ହାତରେ ଝିଅମାନଙ୍କୁ ବିକ୍ରୀ କରିଦେଇଥିଲେ, ତେବେ ସେଥିପାଇଁ କୌଣସି ଚିନ୍ତାର କାରଣ ନାହିଁ ।

ଏହି ଖବର ପାଇ ଆନାଟୋଲିଆ ଗ୍ରାମର ଶ୍ରମିକ, କୃଷକ ଆସିଥିଲେ । ବହୁଦିନ ପରେ ବାପାକୁ ଦେଖି ଝିଅ ତାହା କୋଳରେ କାନ୍ଦି କାନ୍ଦି ଲୋଟିପଡ଼ିଥିଲା । ଭାଇ କାନ୍ଧରେ ମୁଣ୍ଡ ରଖି ଭଉଣୀ କାନ୍ଦିଥିଲା । ଗାଁର ଦୂରସମ୍ପର୍କୀୟ ଆତ୍ମୀୟକୁ ଗୋଟିଏ ଝିଅ ପ୍ରଶ୍ନ ପରେ ପ୍ରଶ୍ନ କରି ଚାଲିଥାଏ—ମୋର ବାପା ଆସିଲେ ନାହିଁ କାହିଁକି ? ମୋର ମାଆ ବଞ୍ଚିଛି ତ ? ଜଣେ ବୃଦ୍ଧ ଘୁରିଆଡ଼କୁ ବୋକାଙ୍କ ପରି ଅନାଇ ଥିଲା—କାହିଁ ? ମୋର ଝିଅ କାହିଁ ? ତାକୁ କାହିଁକି ଦେଖୁନାହିଁ ? କାନ୍ଦିଉଠିଥିଲା ବୃଦ୍ଧ ।

ଅନେକେ ଏହିପରି କାନ୍ଦିଥିଲେ । କେହି ନିଜ ଲୋକ ଫେରିପାଇ ଆନନ୍ଦରେ କାନ୍ଦିଥିଲା । କେହି ପୁଣି ହଜାଇଦେଇ କାନ୍ଦିଥିଲା । କିନ୍ତୁ କେହି ସୁଲତାନ ଅବଦୁଲ ହାମିଦଙ୍କ ପାଇଁ କାନ୍ଦି ନ ଥିଲେ ।

ଯେଉଁ ହାରେମରେ ହାହାକାର, ଯନ୍ତ୍ରଣା ନଥିଲା ସେହି ହାରେମରେ ବସି ବାବରଙ୍କ ବିଦୁଷୀ କନ୍ୟା କବିତା ମଧ୍ୟ ରଚନା କରିଥିଲେ ।

"ହର ମସ୍ତିକେ ଉ-ବା ଆଶିକ-ଇ ଖୁଜ୍ ଇସ୍କାର ନୀସ୍ତ

ତୁ ଇସ୍ଥାକନ୍ ମୀଜାନ୍ କେ ହେଚ, ଆଜ୍ ଉମର ବର ଖୁରଦାର ନୀସ୍ତ"

ଅର୍ଥାତ୍—ନିଜ ପ୍ରେମିକ ପ୍ରତି ନିଷ୍ଠ ହେ ପରି, ତୁମେ ଜାଣିବ ଯେ ଜୀବନକୁ କେହି ପୃଥିବୀରେ ଭୋଗ କରିପାରେ ନାହିଁ। ଜୀବନ ନଶ୍ୱର। ଯାହା ଟିକିଏ ପାଉଛ—ତାକୁ ଭୋଗ କରିଯାଅ।

ଗୁଲବଦନର କଥା କହିବାକୁ ଯାଇ ମୋଗଲସମ୍ରାଟ୍ ଔରଙ୍ଗଜେବଙ୍କର କନିଷ୍ଠା କନ୍ୟା ହାରେମବାସିନୀ ମନସ୍ୱୀ ମହିଳା ଜେବ-ଉନ୍ନିସା କଥା ମଧ୍ୟ ମନେପଡ଼େ। କିନ୍ତୁ ହାରେମରେ ସବୁ ବେଗମ ଗୁଲବଦନ କିମ୍ବା ଜେବ-ଉନ୍ନିସା ପରି ମନପ୍ରାଣ ଦେଇ ସାହିତ୍ୟଚର୍ଚ୍ଚା କରୁ ନ ଥିଲେ। ମମତାଜ କିମ୍ବା ଯୋଧପୁରୀ ବେଗମ ସମସ୍ତେ ହେବେ, ଏହା ସମ୍ଭବ ନୁହେଁ। ସମ୍ରାଟ୍ ଜାହାଙ୍ଗୀର ନିଜେ ଲେଖିଯାଇଛନ୍ତି—କେବଳ ନୂରଜାହାନଙ୍କ ଦେହରେ ସାତ ଲକ୍ଷ ଟଙ୍କାର ଗହଣା ଶୋଭାପାଉଥିଲା। ଉଦୀପୁରୀ ବେଗମଙ୍କ ମାସିକ ହାତ ଖର୍ଚ୍ଚ ଥିଲା କେତେ ଲକ୍ଷ ଟଙ୍କା। ଯେଉଁଠାରେ ଦୈହିକ ସୁଖ ଓ ବିପୁଳ ଐଶ୍ୱର୍ଯ୍ୟର ଅନାୟାସ ପ୍ରାଚୁର୍ଯ୍ୟ, ସେଠାରେ ସଂଯମ ଓ ଶାନ୍ତ ଜୀବନଯାପନ କଠିନ। ଅତ୍ୟନ୍ତ ସ୍ୱାଭାବିକଭାବରେ ଯୌବନବତୀ ବେଗମମାନେ ପ୍ରେମରେ ପଡ଼ୁଥିଲେ। ବ୍ୟର୍ଥ ପ୍ରତିହିଂସାର ଜ୍ୱାଳାରେ ଜଳୁଥିଲେ କିମ୍ବା ବିଫଳ ପ୍ରେମିକର ଶାଣିତ ଛୁରୀଦ୍ୱାରା ପ୍ରାଣ ଦେଉଥିଲେ।

କିନ୍ତୁ ଖୁନ୍-ଜଖମ-ଆତ୍ମହତ୍ୟା ଆଦିଘଟିତ ପାପାଚାର କଣ ହାରେମର ଏକମାତ୍ର କଥା ଥିଲା? ମନେରଖିବାକୁ ହେବ ଗୁଲବଦନକୁ— ଜେବ-ଉନ୍ନିସାକୁ। ଆଉ ପଙ୍କଭିତରେ ପଦ୍ମପରି ଫୁଟିଉଠିଥିବା ଯୋଧପୁରୀ ବେଗମଙ୍କୁ।

ଅନେକ ବେଗମ ସ୍ୱଜନ, ସ୍ୱଧର୍ମ ପରିତ୍ୟାଗର ଅନୁଶୋଚନାପାଇଁ ମନେ ମନେ ଅନୁଶୋଚନାର ନିଆଁରେ ଜଳିପୋଡ଼ି ମରୁଥିଲେ, କିମ୍ବା ବିଶାଳ ସୁରମ୍ୟ କକ୍ଷର ଗୋଟିଏ କୋଣରେ ବସି ଆଖିରୁ ଅଶ୍ରୁ ବିସର୍ଜନ କରୁଥିଲେ। କିନ୍ତୁ ଏ ସବୁ କଥାକୁ ଐତିହାସିକମାନେ କିଛି ଲେଖି ନାହାନ୍ତି। ଲେଖିଯାଇଛନ୍ତି ହାରେମର ଜ୍ୟୋତ୍ସ୍ନାଭରା ରାତିରେ ଶ୍ୱେତପ୍ରସ୍ତର ମହଲରେ ଠିଆ ହୋଇ ଦର୍ଶକମାନେ କଜଳ କଳା ଐଶ୍ୱର୍ଯ୍ୟଭରା ଯମୁନାର ଅପୂର୍ବ ଶୋଭା ଦେଖି ବିଭୋର ହୋଇଯାଉଥିଲେ। ଗନ୍ଧରାଜ ଓ ଗୋଲାପ ଫୁଲର ପାଖୁଡ଼ା ଛିଣ୍ଡାଇ ପାଣିରେ ପକାଇଦେଉଥିଲେ। ଆଉ ଦିଆଲି ରାତିରେ ଯେତେବେଳେ ପ୍ରାସାଦ ନଗରୀ ଆଗ୍ରାର ପ୍ରାସାଦମାନଙ୍କରେ ଆଲୋକ ସଜା ଝଲମଲ କରିଉଠୁଥିଲା, ସେତେବେଳେ ଗୁପ୍ତଦ୍ୱାର ଖୋଲି ଶ୍ୱେତପ୍ରସ୍ତରରେ ନିର୍ମିତ ସିଡ଼ିରେ ଉଠି ନିଃଶବ୍ଦ ପାଦରେ ଆଗେଇଆସୁଥିଲେ ଯୋଧପୁରୀ ବେଗମ। ସାଥିରେ କେତେଜଣ ବିଶ୍ୱସ୍ତ ଅନୁଚରୀ। ପ୍ରତ୍ୟେକଙ୍କ ହାତରେ ସୁଗନ୍ଧ ତେଲର ପ୍ରଦୀପ ଜଳୁଥିଲା।

ସେମାନେ ପ୍ରତ୍ୟେକେ କାଳନ୍ଦୀର ପାଣିରେ ପ୍ରଦୀପ ଭସାଇ ଦେଉଥିଲେ । ଆଉ, ଢେଉନ୍ତ୍ମରେ ନାଚି ନାଚି ପାଣିଉପରେ ଗ୍ରୁସ୍ଥା ରଚନା କରି ଜ୍ୱଳନ୍ତ ପ୍ରଦୀପଶିଖା ଗୁଡ଼ିକ ଦୂରକୁ ବହୁଦୂରକୁ ଚାଲିଯାଉଥିଲା । କିଏ କହୁଥିଲା ଦେଖ ମୋର ପ୍ରଦୀପ ଭାସିଯାଉଛି—କିଏ କହୁଥିଲା ଦେଖ ମୋର ପ୍ରଦୀପଟି ବୁଡ଼ିଗଲା ।

ଅମାବାସ୍ୟାର ଗଭୀର ରାତ୍ରିରେ ନିର୍ଜନ ଯମୁନାତୀରରେ ନାରୀକଣ୍ଠର ଅପୂର୍ବ ସୁରଲହରୀ କୌଣସି ମଧୁର ସଙ୍ଗୀତପରି ଶୁଣାଯାଉଥିଲା !

କିନ୍ତୁ ? ଆଜି ସେହି ହାରେମ ନାହିଁ ! ଆକବର ନାହାନ୍ତି ! ଯୋଧପୁରୀ ବେଗମ ନାହାନ୍ତି ! ସେମାନଙ୍କ ହାତର ଦିଆଲିର ଜ୍ୱଳନ୍ତ ପ୍ରଦୀପ ଶତାବ୍ଦୀପରେ ଶତାବ୍ଦୀ ଧରି ଅନେକ ଦୂରକୁ ଭାସି ଚାଲିଯାଇଛି !

କିନ୍ତୁ, ଯମୁନାର ପାଣିରେ କାନ ପାତିଲେ ବୋଧ ହୁଏ, ଆଜି ମଧ୍ୟ କୌଣସି ଗୋଟିଏ ନିଷ୍ଠାବତୀ ନିଷ୍କଳଙ୍କ ହାରେମବାସିନୀର ଉଷ୍ଣ ଦୀର୍ଘଶ୍ୱାସ ଆଉ ରୁଦ୍ଧକ୍ରନ୍ଦନର ଶବ୍ଦ ଶୁଣାଯିବ ।



# ଲେଖକଙ୍କର ଅନ୍ୟାନ୍ୟ ପୁସ୍ତକ

**କବିତା :**

୧। ଶତାବ୍ଦୀର ପ୍ରେମ

୧। ମାନସୀ

**ଗଳ୍ପ :**

୧। ଅନେକ ସନ୍ଧ୍ୟାର ଆକାଶ

୨। ନଗ୍ନିବହ୍ନୀ

୩। ଗାଁ ହସେ

୪। ସହଯୋଗୀର କାହାଣୀ

୫। ବିବିସାହେବା (ଅନୁବାଦ)

**ଉପନ୍ୟାସ : (ଅନୁବାଦ)**

୧। ସ୍ତ୍ରୀ

୨। ଦତ୍ତା

୩। ବିପ୍ରଦାସ

୪। ଦେବଦାସ

୫। ବିରାଜ ବୋହୂ

୬। ଜନ ଅରଣ୍ୟ

୭। ସୀମାବଦ୍ଧ

୮। ଚୌରଙ୍ଗୀ

୯। ପରସ୍ତ୍ରୀ ( ଯନ୍ତ୍ରସ୍ଥ )



